# ଜୀବନ ଓ ଜ୍ୱଳନ

(କବିତା ସଂକଳନ)

ଶ୍ରୀ ଲୋକନାଥ ମିଶ୍ର (ଭରଦ୍ୱାଜ)
ଓଡ଼ଗାଁ, ନୟାଗଡ଼, ପିନ୍-୭୫୨୦୮୧

| | |
|---|---|
| ସଂକଳନର ନାମ- | 'ଜୀବନ ଓ ଜ୍ୱଳନ' |
| ରଚୟିତା - | ଲୋକନାଥ ମିଶ୍ର (ଭରଦ୍ୱାଜ) |
| ଜନ୍ମସ୍ଥାନ - | କୋରପିଠା ଗ୍ରାମ |
| ବାସସ୍ଥାନ - | ଓଡ଼ଗାଁ (ବାଣୀ ନିକେତନ) ନିତ୍ୟାନନ୍ଦ ସାହି<br>ସା/ପୋ- ଓଡ଼ଗାଁ, ଜି-ନୟାଗଡ଼ - ୭୫୨୦୮୧<br>ଫୋନ୍ : ୯୪୩୭୫୫୮୮୭୦ |
| ଜନ୍ମତାରିଖ - | ୧୫.୩.୧୯୩୭ |
| ରଚନାକାଳ- | ୨୦୦୬ |
| ପ୍ରଥମ ସଂସ୍କରଣ- | ୨୦୦୬ (୧୦୦୦ ଖଣ୍ଡ) |
| ପ୍ରକାଶକ- | ଇଂ. ତୁଷାର କୁମାର ମିଶ୍ର |
| ପ୍ରଚ୍ଛଦ ଶିଳ୍ପୀ- | ଶ୍ରୀ ବଳଦେବ ମହାରଥୀ |
| ଡି.ଟି.ପି.- | ପ୍ରଧାନ ଡି.ଟି.ପି., ନୟାଗଡ଼ |
| ମୁଦ୍ରଣ - | |
| ମୂଲ୍ୟ - | ଟ ୫୦.୦୦ (ପଚାଶ ଟଙ୍କା) ମାତ୍ର |

| | |
|---|---|
| Name of the Book - | "Jeebana O Jwalana" |
| Writer - | Lokanath Mishra (Bhardwaj) |
| Date of Birth - | 15. 03. 1937 |
| Place of Birth - | Korapitha |
| Present Address - | At/P.O.- Odagaon, Dist- Nayagargh<br>~~Mob- 94375598870, 9437155644~~ |
| Period of Writing - | 2006 (1000 Copies) |
| Published by - | Er. Tushar Kumar Mishra |
| Cover Design - | |
| D.T.P.- | Pradhan D.T.P., Nayagarh |
| Printed at - | |
| Price | Rs. 50/- (Rupees Fifty only) |

# ଅଭିବ୍ୟକ୍ତି ଏକ ଅଭିଶପ୍ତ ହୃଦୟର

ଉର୍ବଶୀ, ତମେ ଚାଲିଗଲା ପରେ, ଇଚ୍ଛାଥିଲା, ତୁମ ମରଶରୀରକୁ ଦିଲ୍ଲୀ ଏମ୍ସ୍ (A.I.I.M.S)ରୁ ହରଦ୍ୱାର ନେଇ ସଂସ୍କାର କରି, ଚିତାଭସ୍ମ ଗଙ୍ଗାରେ ବିସର୍ଜନ କରିଥାନ୍ତି ଏବଂ ଅସ୍ଥି ଆଣି ଓଡ଼ଗାଁରେ ଦଶାହକ୍ରିୟାକର୍ମ କରିଥାନ୍ତି, କିନ୍ତୁ ତମର ଶେଷ ଇଚ୍ଛାଥିଲା, ମରଶରୀରକୁ ଓଡ଼ଗାଁ ଆଣି, ସମସ୍ତ ବନ୍ଧୁ ବାନ୍ଧବଙ୍କ ଉପସ୍ଥିତିରେ ସଧବା ବେଶରେ ସଜାଇ, ଅର୍ଘ୍ୟ ଡ଼େଙ୍ଗୁରା ବଜାଇ, ଖଇ କଉଡ଼ି ବୁଣି, ନେଇ ସଂସ୍କାର କରିବା ପାଇଁ। ତୁମ କହିବା ଅନୁସାରେ, "ଶେଷଇଚ୍ଛା ପୂରଣ କରିଛି ସତ, କିନ୍ତୁ ତମକୁ ମନେ ନ ପକାଇ ଭୁଲି ଯିବାପାଇଁ ଯାହା କହିଥିଲ, ଯେତେ ବେଶୀଦିନ ଅତି ବାହିତ ହେଉଛି, ସେତେବେଶୀ ତୁମକଥା ମନେ ପଡୁଛି। ଦୀର୍ଘଦିନ ତୁମ ସହ ସୁଖମୟ ଦାମ୍ପତ୍ୟ "ଜୀବନ" ଯାପନକଲା ପରେ, ହଠାତ୍ ନିଃସଙ୍ଗତା ରୂପକ ଯେଉଁ ଦୁର୍ବିସହ 'ଜ୍ୱଳନ' ସର୍ବଦା ହୃଦୟକୁ ମୋର ଦଗ୍ଧ କରୁଛି, ସେଥିରେ ମୁଁ ଅତିଷ୍ଠ ବ୍ୟାସକବି ଫକିର ମୋହନଙ୍କର ସେଇ କବିତା "ହସି ହସି ଗଲୁ ମତେ କନ୍ଦାଇ କନ୍ଦାଇ" ସଦା ସର୍ବଦା ମନେପଡ଼ି ଚକ୍ଷୁ ଲୋତକରେ ଭରି ଯାଉଛି । ପିଲା ମାନଙ୍କୁ ଉଚ୍ଚଶିକ୍ଷା ଦେଇ ମଣିଷ କରିବା ପାଇଁ, ତମେ କେତେ ଯେ କଷ୍ଟ କରିଛ ? ବଂଚିଥିଲେ ଆଜି କେତେ ଖୁସି ହେଉଥାନ୍ତ ? ସେ ସବୁ ଦେଖିବାକୁ କିନ୍ତୁ ତମେ ରହିଲନି। ଉଚ୍ଚ ଶିକ୍ଷାପାଇ ପିଲାମାନେ କର୍ମ କ୍ଷେତ୍ରରେ ଯାଇ କିଏ କେଉଁଠି ରହିଲେ। ଘରର ଚାରିକାନ୍ଥ ଭିତରେ ମୁଁ ଏକ ନିଃସଙ୍ଗ ବନ୍ଦି ଜୀବନ ଯାପନ କରୁଛି। ଚତୁଃପାର୍ଶ୍ୱରେ ମୋର କେବଳ ଦୁର୍ବିସହ ନିଃସଙ୍ଗତା ହିଁ ନିଃସଙ୍ଗତା। ସେଇ ନିଃସଙ୍ଗ ଜୀବନରେ 'କବିତା ହିଁ ମୋର ଏକମାତ୍ର ସାଥି ଏବଂ ସହଚର। କିଏ ନିନ୍ଦାକରୁ ବା ପ୍ରଶଂସା, କାହାକୁ ଭଲ ଲାଗୁ ବା ନ ଲାଗୁ, ମୁଁ କିନ୍ତୁ ଆତ୍ମତୃପ୍ତି ପାଏ ତେଣୁ :-

ଲୁହରେ ଲେଖୁଛି କବିତା ବସି ମୁଁ ନିତିନିତି
ନିଃସଙ୍ଗ ଜୀବନେ କରିଛି ତାକୁ ଜୀବନ ସାଥି
ମନକଥା ଖୋଲି କହୁଛି ତାକୁ ନିରୋଳେ ବସି,
କବିତା ସୁନ୍ଦରୀ ତୁମେ ମୋ ମନ ଆକାଶ ଶଶି।

ତୁମେ ଏକା ଦେଇ ପାରିବ ମୋର ଜୀବନେ ଶାନ୍ତି
ତେଣୁ ମୋ କବିତା ତୁମକୁ ଛାଡ଼ି ନପାରେ ନିତି ॥

ଅପ୍ରକାଶିତ କାବ୍ୟ (ଦଗ୍ଧଫୁଲ ବନର ମାଳୀ)

ତୁମରି ସ୍ମୃତିରେ କବିତା ଲେଖି ଲେଖି ମୋର ଶେଷ ନିଃଶ୍ୱାସ ବନ୍ଦ ହୋଇଯାଉ, ଏହାହିଁ ମୋର ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା। 'ମନ ମରାଳ କୂଜେ' ଓ 'ଉର୍ବଶୀ' ପରେ ଏଇ ତୃତୀୟ ଅର୍ଘ୍ୟ 'ଜୀବନ ଓ ଜ୍ୱଳନ' ତୁମକୁ ହିଁ ସମର୍ପଣ କରୁଛି। ସ୍ୱର୍ଗରେ ଥାଇ ଏହା ଗ୍ରହଣ କରିବ।

॥ ଇତି ॥

ତୁମର ଅଭିଶପ୍ତ ଯକ୍ଷ

ବି.ଦ୍ର.: ସୁଖମୟ ଦାମ୍ପତ୍ୟ ଜୀବନ ହେଉଛି 'ଜୀବନ' ଏବଂ ପତ୍ନୀ ବିଚ୍ଛେଦ ଜନିତ ଦୁର୍ବିସହ ବିରହ ବିଧୁର ନିଃସଙ୍ଗ ଜୀବନର ଦୁଃଖ ଓ ଯନ୍ତ୍ରଣାକୁ ଦହନ ବା 'ଜ୍ୱଳନ' ଅର୍ଥରେ ଗ୍ରହଣ କରି, ବ୍ୟଥିତ ଅନ୍ତରର ମର୍ମନ୍ତୁଦ ଦୁଃଖଦ ଭାବାବେଗକୁ 'ଜୀବନ ଓ ଜ୍ୱଳନ' ଭାବରେ ପରିପ୍ରକାଶ କରାଯାଇଛି। 'ବ୍ୟଥିତ କୃଷ୍ଣ' କବିତାରେ କବି ନିଜ ହୃଦୟର ବ୍ୟଥାକୁ ଶ୍ରୀକୃଷ୍ଣଙ୍କର ମୁଖରେ ଉଦ୍ଘାଢବଙ୍ଗଟକୁ ପ୍ରଶ୍ନ କରିଛନ୍ତି ନିଜ ପ୍ରାଣପ୍ରିୟା ସମ୍ପର୍କରେ। ଶେଷରେ କବି, ସାହିତ୍ୟିକ ତଥା ରଣପୁର ସରକାରୀ ଉଚ୍ଚ ବିଦ୍ୟାଳୟର ସଂସ୍କୃତ ଶିକ୍ଷକ ଅନୁଜ ପ୍ରତିମ ପଣ୍ଡିତ ଶ୍ରୀ ବିରଞ୍ଚି ନାରାୟଣ ତ୍ରିପାଠୀ 'ଜୀବନ ଓ ଜ୍ୱଳନ'ର ପାଣ୍ଡୁଲିପିଟିକୁ ପାଠକରି ସଂଶୋଧନ କରି ଦେଇଥିବାରୁ ବଡ଼ଭାଇନା ଭାବରେ, ମୁଁ ତାଙ୍କର ଦୀର୍ଘ ନିରାମୟ ଜୀବନ ତଥା ଉତ୍ତରୋତ୍ତର ଉନ୍ନତି କାମନା କରୁଛି ଏବଂ ଗଣେଶ୍ୱର ମିଶ୍ର, ସଭାପତି, ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ତଥା ଶିଶୁ ସାହିତ୍ୟିକ ଶ୍ରୀଯୁକ୍ତ ଯଦୁନାଥ ଦାଶ ମହାପାତ୍ର, ପୂର୍ବତନ ଶିକ୍ଷାମନ୍ତ୍ରୀ ଓଡ଼ିଶା, ପାଣ୍ଡୁଲିପିଟିକୁ ପାଠକରି ସ୍ୱ ସ୍ୱ ଅଭିମତ ପ୍ରଦାନ କରିଥିବାରୁ ଉଭୟଙ୍କ ନିକଟରେ ଲେଖକ କୃତଜ୍ଞତା ଜ୍ଞାପନ କରୁଛି।

॥ ଇତି ॥

ସୌଜନ୍ୟ ମୁଗ୍ଧ

ରଚୟିତା

# ଅଭିମତ

ଶ୍ରୀ ଲୋକନାଥ ମିଶ୍ର (ଭରଦ୍ୱାଜ)ଙ୍କ ସଦ୍ୟତମ କବିତା ସଂକଳନ, ଜୀବନ ଓ ଜ୍ୱଳନର ପାଣ୍ଡୁଲିପି ପଢ଼ିବାର ସୁଯୋଗ ମିଳିଲା। ଶ୍ରୀ ମିଶ୍ର ନିରବଚ୍ଛିନ୍ନ ଭାବେ ବହୁ ବର୍ଷ ଧରି କାବ୍ୟ-କବିତା ରଚନା କରି ଆସୁଥିବା ଆନନ୍ଦର ବିଷୟ।

'ଜୀବନ ଓ ଜ୍ୱଳନ'ର ସମସ୍ତ କବିତା ଏକ ମାତ୍ର ବିଷୟବସ୍ତୁ ଉପରେ ଅଧାରିତ। ତାହା ହେଉଛି-ବିରହ ବେଦନା। ପତ୍ନୀଙ୍କ ଅକାଳ ପରଲୋକ କବିଙ୍କ ମନରେ ଯେଉଁ ଭାବାବେଗ ସୃଷ୍ଟି କରିଛି, ତାହା ସେ ବିଭିନ୍ନ କବିତାରେ ପ୍ରକାଶ କରିଛନ୍ତି। କେତେକ କବିତା ମୁକ୍ତଛନ୍ଦରେ ଲିଖିତ। ଅନ୍ୟ କେତୋଟି କବିତା ଛନ୍ଦୋବଦ୍ଧ। ପ୍ରତି କବିତାରେ କାରୁଣ୍ୟର ମୁଦ୍ରାସ୍ପଷ୍ଟ। ସେଥିପାଇଁ କବିତା ଗୁଡ଼ିକ ପାଠକଙ୍କ ହୃଦୟକୁ ସ୍ପର୍ଶ କରେ।

କାବ୍ୟ ସାହିତ୍ୟ ପ୍ରତି କବିଙ୍କ ପ୍ରତିବଦ୍ଧତା ପାଇଁ, ତାଙ୍କୁ ବଧାଇ ଜଣାଉଛି।

ଘଣେଶ୍ୱର ମିଶ୍ର
ସଭାପତି, ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର
୨୩ ଡିସେମ୍ବର ୨୦୦୫



ଯଦୁନାଥ ଦାଶ ମହାପାତ୍ର
*ପୂର୍ବତନ ଶିକ୍ଷାମନ୍ତ୍ରୀ*
୩୯, ଭି.ଆଇ.ପି. କଲୋନୀ, ଭୁବନେଶ୍ୱର-୧୫

# ଅଭିମତ

କବି ଶ୍ରୀ ଲୋକନାଥ ମିଶ୍ର (ଭରଦ୍ୱାଜ)ଙ୍କ ଲିଖିତ କବିତା 'ଜୀବନ ଓ ଜ୍ୱଳନ'ର ପାଣ୍ଡୁଲିପି ଆମୂଳଚୂଳ ପାଠକଲି। କବିତାର ବିଭିନ୍ନ ବିଭାଗରେ ସେ ଲେଖନୀ ଚାଳନା କରି ପାଠକ-ପାଠିକାମାନଙ୍କୁ ବିମୋହିତ କରିଅଛନ୍ତି। ପୂର୍ବରୁ ପ୍ରକାଶ ପାଇଥିବା ବ୍ୟଙ୍ଗ କବିତା ସଂକଳନ 'ଏଠି ସବୁ ଚଳିବ (୨୦୦୨) ଓ ଶିଶୁ କିଶୋର କବିତା ସଂକଳନ 'ଆ ଜହ୍ନ ମାମୁ' (୨୦୦୩) ମୁଁ ପଢ଼ିଥିଲି। କବିତା ଗୁଡ଼ିକ ସଦୁଦ୍ଦେଶ୍ୟର ବାର୍ତ୍ତା ବହନ କରେ। କବିଙ୍କର ଧର୍ମପତ୍ନୀ ଉର୍ବଶୀଙ୍କର ପ୍ରୌଢ଼ତ୍ୱ କାଳରେ ୧୯୯୪ ମସିହାରେ ମହାପ୍ରୟାଣ ଘଟିଥିଲା। ତାଙ୍କର ଅକାଳ ମୃତ୍ୟୁ, କବି ଲୋକନାଥଙ୍କ ଜୀବନରେ ଯେଉଁ ଶୂନ୍ୟତା ସୃଷ୍ଟି କରିଥିଲା, ତାହାହିଁ ତାଙ୍କର ଲେଖନୀକୁ ଭିନ୍ନ ମୋଡ଼ ଦେଇଥିଲା ଏବଂ ସେ ସୃଷ୍ଟି କରିଥିଲେ ବହୁ ବିରହ ସଂଗୀତ। ତାଙ୍କ ଲିଖିତ କବିତା ପୁସ୍ତକ 'ମନ ମରାଳ ଝୁରେ' ଓ ଉର୍ବଶୀ ହିଁ ଏହାର ଉଦାହରଣ। 'ଜୀବନ ଓ ଜ୍ୱଳନ' ମଧ କବିଙ୍କର ଭାଙ୍ଗିଯାଇଥିବା ମନର ପରିପ୍ରକାଶ। ଏଥିରେ ସନ୍ନିବେଶିତ ବହୁ କବିତାରେ ସେ ନିଜ ମନ ଓ ଜୀବନର ଜ୍ୱାଳାକୁ ପରିପ୍ରକାଶ କରିଛନ୍ତି। ଏପରିକି ବିରହ ଜର୍ଜ୍ଜରିତ କବି ନିଜର ମୃତ୍ୟୁକୁ ମଧ ନିମନ୍ତ୍ରଣ କରିଛନ୍ତି। ମୃତ୍ୟୁ କବିତାରେ ଲେଖିଛନ୍ତି-

"ମୁଁ କିନ୍ତୁ ଚାହୁଁନି ଆଉ
ବଂଚିବାକୁ ଦୀର୍ଘ କାଳ
ତେଣୁ କରୁଚି ଆହ୍ୱାନ
ହେ ମୃତ୍ୟୁ, ଆସ ଶୀଘ୍ର

ନେଇଯାଅ ତୁମ ପାଶେ ମୋତେ।"

ମୃତ୍ୟୁ କାମନାର କାରଣ ସେ ଉଲ୍ଲେଖ କରିଛନ୍ତି 'ଜଳୁଚି ମୁଁ ସ୍ମୃତିର ନିଆଁରେ' କବିତାରେ-

'ସବୁତ ଯାଇଚି ସରି
ଜୀବନରୁ ମୋର,
ରହିଛି କେବଳ ବାକି
ଜଳିବାକୁ ଚିତାଅନଳରେ ।'

ବହୁ କବିତାରେ ତାଙ୍କ ବିରହ ଦୁଃଖ ପ୍ରତିଫଳିତ। ଏହା ହେବା ସ୍ୱାଭାବିକ। 'ବିଦାୟ ବାର୍ତ୍ତା' କବିତାରେ ସେ ସମସ୍ତ କଥା ସ୍ପଷ୍ଟଭାବେ ଉଲ୍ଲେଖ କରିଛନ୍ତି। ଏହି କବିତାଟି ପାଠକ-ପାଠିକାଙ୍କ ପ୍ରାଣକୁ ସ୍ପର୍ଶ କରିବ ନିଶ୍ଚୟ ଓ ଆଖିରୁ ଲୁହ ଝରାଇବ। ଶେଷରେ 'ପୁଣି ସାଥୀ ହେବି' କବିତାରେ ସେ ଆଶା କରିଛନ୍ତି ପରଜନ୍ମରେ ପୁଣି ତାଙ୍କର ଓ ଉର୍ବଶୀଙ୍କର ମିଳନ ହେବ।

'ଦିବା ନିଶି ଭାବେ ବସି ତୁମ ଗୁଣଗ୍ରାମ
ଦୁନିଆରେ କିଏ ହେବ ଆଉ ତୁମ ସମ
ଠକି ଦେଇଗଲ ସିନା ଏଇ ଜନମରେ
ସାଥୀ ହେବି ନିଶ୍ଚେ ପୁଣି ପରଜନମରେ।'

ହୃଦୟ ଜ୍ୱାଳାର ମାର୍ମିକ ପ୍ରକାଶନ ଯୋଗୁଁ କବିତା ଗୁଡ଼ିକ ପାଠକ ପାଠିକାଙ୍କ ମର୍ମକୁ ସ୍ପର୍ଶ କରିବ, ଏହା ମୋର ଦୃଢ଼ ବିଶ୍ୱାସ।

ଯଦୁନାଥ ଦାଶ ମହାପାତ୍ର
ତା ୩.୩.୨୦୦୬

# ଉତ୍ସର୍ଗ

ଯେଉଁମାନେ ମୋର ପୂର୍ବ ରଚିତ ବିରହ କବିତା ସଂକଳନ 'ମନ ମରାଳ ଝୁରେ' ଓ 'ଉର୍ବଶୀ' ପଢ଼ି କବିତାଗୁଡ଼ିକ ଅତି ମର୍ମସ୍ପର୍ଶୀ ଏବଂ ହୃଦୟକୁ ଛୁଇଁଲାଭଳି କରୁଣ ରସାପ୍ଳୁତ ହୋଇଛି ବୋଲି ଚିଠିଚିଏ ଦେଇଛନ୍ତି ଏବଂ ସାକ୍ଷାତରେ କହିଛନ୍ତି, ସେହି ରସଗ୍ରାହୀ ପାଠକ, ପାଠିକା ମାନଙ୍କୁ ମୋର ଏହି ତୃତୀୟ ବିରହ କବିତା ସଂକଳନ 'ଜୀବନ ଓ ଜ୍ୱଳନ' ଉତ୍ସର୍ଗ କରୁଛି। ପୂର୍ବପରି ଉକ୍ତ ସଂକଳନର କବିତା ଗୁଡିକ ରସଗ୍ରାହୀ ପାଠକ, ପାଠିକା ମାନଙ୍କର ହୃଦୟକୁ ସ୍ପର୍ଶ କଲେ ଲେଖକର ଶ୍ରମ ସାର୍ଥକ ହେବ।

॥ ଇତି ॥

*ବିନୀତ ଲେଖକ*

# ସୂଚୀପତ୍ର

# ବ୍ୟଥିତ କୃଷ୍ଣ

ପୂର୍ବାଭାଷ - କଂସାସୁରଙ୍କର ନିଧନ ପରେ ଅଜା ଉଗ୍ରସେନଙ୍କୁ ରାଜା କରାଇବା ପାଇଁ ଏବଂ ମାଇଁ ମାନଙ୍କୁ ପ୍ରବୋଧନା ଦେବାପାଇଁ ମଥୁରାରେ କିଛିଦିନ ଅବସ୍ଥାନ କରିଛନ୍ତି-ଭଗବାନ ଶ୍ରୀକୃଷ୍ଣ । ଇତ୍ୟବସରରେ ଧରା ପୃଷ୍ଠରେ ଅବତୀର୍ଣ୍ଣ ହୋଇଛନ୍ତି ଋତୁରାଜ ବସନ୍ତ । ମନୋରମ ପୁଷ୍ପ-ପଲ୍ଲବରେ ସୁଶୋଭିତ ହୋଇଛନ୍ତି ପାଦପରାଜି, ଅଳିର ଗୁଞ୍ଜନ ଆଉ କୋକିଳର କୁହୁ ତାନରେ ପୁଲ୍ଲକିତ ହୋଇ ଉଠିଛି ତନୁମନ । ମନେ ପଡ଼ିଛି ଗୋପ ଆଉ ଗୋପାଙ୍ଗନା ମାନଙ୍କର କଥା । ବିରହ-ବେଦନାରେ ବ୍ୟଥିତ କୃଷ୍ଣ ପଶ୍ନ କରିଛନ୍ତି ବସନ୍ତକୁ ପ୍ରାଣପ୍ରିୟା ରାଧିକା ସଂପର୍କରେ ।

ବସନ୍ତ,
ହେ ପ୍ରିୟ ବସନ୍ତ !
ତୁମେ କି ଆଣିଚ ସାଥେ
ପ୍ରାଣ ପ୍ରିୟା ମୋର ରାଇ କିଶୋରୀକୁ
କାହିଁ ? କାହିଁ ମୋର ଚନ୍ଦ୍ରାନନୀ ଚଂପକ ବରନା ?
କୁହ, କୁହ ହେ ବସନ୍ତ
ତୁମେ କି ଭେଟିନ ତାରେ ?
ସ୍ୱାର୍ଥପର ,ସ୍ୱାର୍ଥପର ତୁମେ ।
ସାଜିଛି, ସାଜିଛି ସେ ବେଶ,
ବାନ୍ଧିଛି ସେ କେଶ,
ହସୁଛି ସେ ହସ,
ରଚିଛି ସେ ରାସ,
ତୁମ ପାଇଁ, ପିକ ତାନେ
ଗାଉଛି ସେ ମଙ୍ଗଳ ଗୀତିକା
ମହକାଇ ଚଉଦିଗ ବକୁଳର ଗନ୍ଧେ,
ପ୍ରତୀକ୍ଷମାଣା ସେ ପ୍ରକୃତି ସୁନ୍ଦରୀ,
ଉନ୍ମନା ସେ ମିଳନର ଛନ୍ଦେ,

ବସନ୍ତ, ହେପ୍ରିୟ ବସନ୍ତ
ଆସ, ବସ, ହସ, ରସ,
ଆଉ ମୁଁ ?
ମୁଁ ଯେ ବ୍ୟଥିତ, ବିରହିତ,
କେତେ ଯେ ଅସହ୍ୟ ବେଦନାରେ,
ମୋ ଅନ୍ତର ମଥିତ, ଶରାହତ
ନିରସ, ନିରସ ଲାଗେ, ଏମଥୁରାପୁରୀ,
ଦାସ, ଦାସୀ, ପରିଚ୍ଛରୀ, ଏ ରାଜପ୍ରାସାଦ
ସବୁ କିଛି ଲାଗେ ମତେ, କେମିତି କେମିତି ।
ଯମୁନାର କୂଳ ଆଉ କଦମ୍ବର ମୂଳ
ଅହରହ ମନେ ପଡ଼େ ନିକୁଞ୍ଜ କାନନ
ଆଖି ଆଗେ ଭାସି ଉଠେ, ଗୋକୁଳର ଦୃଶ୍ୟ
ସ୍ମିତ ଲପନା, ଗୋପାଙ୍ଗନା,
ଲଳିତା, ବିଶାଖା, ବୃନ୍ଦା ଆଦି ପ୍ରିୟ ସଖୀ ଗଣ
ନିତି ନୂଆ ବେଶେ ସାଜି ନିଜ ତୁମମନ
ଭୁଲାଇବା ପାଇଁ ମୋରେ ମୋହିନୀ ମନ୍ତରେ
କେତେ ଯେ ଆଖିର ଇସାରା, ଆଉ ରୂପର ପସରା
ମନର ଦଶରା ଆଉ ଥଟାର ଅସରା ବର୍ଷି
ମୋ ମନର ଉପକଣ୍ଠେ, ସୃଷ୍ଟିକଲେ ଅଜସ୍ର ଜୁଆର,
ଖେଳାଇଲେ ମୋ ଅଙ୍ଗରେ ନୂତନ ସ୍ପନ୍ଦନ,
ଅଙ୍ଗେ ଅଙ୍ଗେ ନୂତନ କମ୍ପନ,
ଭୁଲି ସବୁ ବାଧା ବିଘ୍ନ ସମାଜ ବନ୍ଧନ,
ବାଇଚି ମୁଁ ବୃନ୍ଦାବନେ ମୋହନ ମୁରଲୀ ବେଣୁ,
ଗାଇଚି ମୁଁ ମତାଣିଆ ସୁରେ,
ତୋଳିଚି ମୁଁ ମଧୁର ମୂର୍ଚ୍ଛନା,
କିନ୍ତୁ ପ୍ରାଣ ପ୍ରିୟା ମୋର ରାଧିକା, ଅତି ଅଧିକା,

ଥିଲା ସୁନ୍ଦରୀ, ବଡ଼ ହୁନ୍ଦରୀ,
କଲା ମନ୍ତର, ନେଲା ଅନ୍ତର,
କଲା ପୀରତି ଦେଲା ସୁରତି
ସେଇଦିନରୁ, ଗୋପ ଜନରୁ,
ଆମ ନାଁରେ , ଗୋପ ଗାଁରେ,
ନିନ୍ଦା ବାଜଣା, କେତେ ଗଞ୍ଜଣା,
ସେ ଯେ ସହିଛି, ମୋତେ କହିଛି,
ପ୍ରାଣ ପ୍ରିୟ ହେ, ସ୍ନେହ ଦିଅହେ ପ୍ରୀତି ନିଅହେ।
ବସନ୍ତ ଆହେ ବସନ୍ତ, ପ୍ରିୟ ବସନ୍ତ,
ତୁମେ ଆସିଚ ତୁମେ ଆସୁଚ
ତୁମେ ଆସିବ, ସଦା ଆସିବ,
ଆହା କହତ, ସତ କହତ,
ପ୍ରିୟା ଆସିବ, ପାଖେ ବସିବ,
ଟିକେ ହସିବ, ଆଉ କହିବ,
ପ୍ରାଣ ପ୍ରିୟ ହେ, ସ୍ନେହ ଦିଅହେ, ପ୍ରୀତି ନିଅହେ।

*(ବାଲେଶ୍ୱରରୁ 'ସନ୍ଧ୍ୟା' ୨୦୦୧ ସଂଖ୍ୟାରେ ପ୍ରକାଶିତ, ଆକାଶବାଣୀ କଟକ ସୌଜନ୍ୟରୁ ଯୁବବାଣୀରେ ପ୍ରଚାରିତ)*



# ନିର୍ବାପିତ ଦୀପଶିଖା

ଜଳିଜଳି ଜୀବନ ସଳିତା,
କରିଦେଇ ଆଲୋକିତ
ଜୀବନର ଚଲାପଥ ମୋର,
ଭରି ଦେଲା ଜୀବନରେ
ପ୍ରେରଣାର ଭସ୍ତ,
କରିଦେଲା ସାକାର ତା,
ଆଶାର ସଉଧ।
ସ୍ୱପ୍ନ ମୁଁ ଦେଖୁଲି ଯେବେ
ସ୍ୱର୍ଗ ସୁଖ ପାଇବାର ଆଶେ,
ସରିଗଲା ତୈଳ ଆହା
ଜଳିଗଲା ଜୀବନ ସଳିତା।
ନିର୍ବାପିତ ହେଲା ଦୀପଶିଖା।
ଘୋଟିଗଲା ଅନ୍ଧକାର,
ଚତୁର୍ଦ୍ଦିଗେ ମୋର।
ପଥହୀନ ପଥିକ ମୁଁ,
ପାଏ ନାହିଁ ରାହା।
ଆଶା ମୋର ରହିଗଲା
ଆଶାରେ ଆଶାରେ।
ବିଦଗ୍ଧ ପ୍ରାଣ ମୋ ଖାଲି
କରେ ହା'ହା' କାର॥



*(୧୫ ଅଗଷ୍ଟ ୧୯୯୬; 'ସ୍ୱଚ୍ଛତାର ସ୍ୱର'ରେ ନେହେରୁନଗର, ଜୟପୁରରୁ ପ୍ରକାଶିତ)*

# ନିଖୋଜ ଶାମୁକା, ବ୍ୟଥିତ ସାଗର

ଅନ୍ତରରେ ଆତ୍ମିୟତାର ନିବିଡ଼ତା ଓ
ପ୍ରାଣରେ ପ୍ରେମର ପ୍ରାଚୁର୍ଯ୍ୟ ଭରି ଦେଇ ଥିବା
ଆଦରର ଶାମୁକା ଲୋ ମୋର,
ଜୀବନର ବେଳା ଭୂମିରେ ,ତତେ ପାଇ,
କେତେ ସରାଗରେ ଖେଳିଲି ତୋ ସାଥେ।
କେତେ ଯେ ଲହଡ଼ିର ଧକ୍କା ଖାଇ,
ଦୁଃଖ ଯନ୍ତ୍ରଣାରେ ଭାଙ୍ଗିନଯାଇ,
ଆନନ୍ଦ ଭରିଦେଲୁ ମୋ ପ୍ରାଣରେ।
ମୁକ୍ତା ଗୁଡ଼ିଏ ଜନ୍ମ ଦେଇ,
ଅଚାନକ ହଜିଗଲୁ କେଉଁ ଆଡ଼େ ?
ଆଖିର ଲୁହରେ ସବୁ ବେଳେ ଖାଲି
ଖୋଜୁଛି ମୁଁ ତୋତେ-
ଅଣ ନିଶ୍ୱାସୀ ହୋଇ।
ନିଃସଂଗ ମନ ପ୍ରାଣ ମୋର
ଲୋଡ଼େ ସଦା ସାହଚର୍ଯ୍ୟ ତୋର
ଜୀବନର ଖେଳ ସାଥୀ,
ଆଦରର ଶାମୁକା ଲୋ ମୋର,
ତୋତେ ଜମା ପାରୁନି ପାଶୋରି।
ଫେରି ଆସନ୍ତୁକି ପୁଣିଥରେ,
ତୋ ବ୍ୟଥିତ ସାଗରର,
ବେଳା ଭୂମିକୁ ? ?
ଲୁହର ତରଂଗରେ ଧୋଇ ଦିଅନ୍ତି,
ଯେତେ ସବୁ ଅତୀତର
ବ୍ୟଥା ଓ ବେଦନା
ସାଇତି ରଖନ୍ତି ବକ୍ଷର ଅତଳ ଗହ୍ୱରରେ
ଜନ୍ମ ଜନ୍ମାନ୍ତର ପାଇଁ।।



# ମନ ଆକାଶର ତାରା

ମୋ ମନର ନୀଳ ଆକାଶରେ
ଉଇଁଥିଲା ନୀଳ ତାରାଟିଏ
ଯା ଆଲୋକ ଦେଖିଲି ନୟନେ
ଜୀବନର ଦ୍ୱିତୀୟ ପ୍ରହରେ ।
ନଥିଲା ଯଦି ବା ତାର
ଚନ୍ଦ୍ରସମ ବିପୁଳ ଜୋଛନା,
ତଥାପି ତା ଗ୍ଧ ମୁହଁ
ଜଳୁଥିଲା କରି ଆଲୋକିତ
ମୋ ଜୀବନ ରଜନୀର
ଦ୍ୱିତୀୟରୁ ତୃତୀୟ ପ୍ରହର,
ଆଲୋକେ ତା, ହୋଇ ଉଦ୍‌ଭାସିତ
ପ୍ରାଣର ପ୍ରାଚୁର୍ଯ୍ୟ ଯେବେ
ଲଭିବି ଭାବିଲି,
ଲୁଚିଗଲା ମୋ ମନର
ଆକାଶ ରୁ ସିଏ
ଚତୁର୍ଥ ପ୍ରହରେ।
ଉର୍ଦ୍ଧ୍ୱମୁଖେ, ନୈରାଶ୍ୟରେ,
ପ୍ରତୀକ୍ଷାରତ ମୁଁ, ନିଃସଂଗ ପାନ୍ଥ।
ଉଇଁବ ସଂତେ କି ପୁଣି
ମୋ ଜୀବନ ଆକାଶରେ
ସେଇ ନୀଳ ତାରା ?

❖❖❖

ବି.ଦ୍ର:- କିଶୋର ବୟସରେ ୧୯୫୪ ମସିହାରେ ନବମ ଶ୍ରେଣୀରେ ଅଧ୍ୟୟନ ରତ ସମୟରେ ୧୭ବର୍ଷ ବୟସରେ କବିଙ୍କର ବାଲ୍ୟ ବିବାହ ହୋଇଥିଲା କବି ପତ୍ନୀ "ଉର୍ବଶୀ" ଙ୍କ ସହିତ ୯ବର୍ଷ ବୟସରେ। ବିବାହର ୫ବର୍ଷ ପରେ ୧୯୫୯ ମସିହାରେ ୧୪ବର୍ଷ ବୟସରେ ବଧୂହୋଇ ଆଗମନ କରିଥିଲେ କବିପତ୍ନୀ, କବିଙ୍କ ଗୃହକୁ।

# ଝୁରେନି ସାବିତ୍ରୀ ଆଜି ଝୁରେ ସତ୍ୟବାନ

(ସାବିତ୍ରୀ ଅମାବାସ୍ୟାରେ ପତ୍ନୀ ବିରହରେ)

ଶାଢ଼ି ଚୁଡ଼ି, ସିନ୍ଦୂର, ଅଳତା ଆଉ,
ଆମ୍ବ, ନଡ଼ିଆ, ପଣସ, କଦଳୀ,
କିଣିବାର ଆବଶ୍ୟକତା ନାହିଁ ଆଉ
ସାବିତ୍ରୀ ପାଇଁ ଆଜି।
ଜୀବନର ପ୍ରତିଟି ମୁହୂର୍ତ୍ତରେ,
ଆଖିର ଲୁହ ଆଉ-
ହୃଦୟର କୋହରେ,
ଝୁରେନି ସାବିତ୍ରୀ ଆଜି,
ଝୁରେ ସତ୍ୟବାନ।
ପତିବ୍ରତା, ସତୀ ସାଧ୍ୱୀ
ଥିଲା ସେ ସାବିତ୍ରୀ।
ସ୍ୱର୍ଗ ପୁରେ ଚାଲିଗଲା
ଯମ ସଂଗେ, ଫେରିଲାନି ଆଉ।
ଜୀବନର ବିନିମୟେ
ମାଗିଥିଲା ଦିନେ ସିନା
ସତ୍ୟବାନ ପ୍ରାଣ।
ଆଜି କିନ୍ତୁ!
ମାଗେ ନାହିଁ ସତ୍ୟବାନ,
ସାବିତ୍ରୀ ଜୀବନ।
ହେ ପ୍ରଭୁ, ଯମଦେବ!
ନେଇ ଯାଅ ଯଥାଶୀଘ୍ର
ଏ ପାପୀ ସତ୍ୟ ବାନେ
ସାବିତ୍ରୀର ପାଶେ।।

❖❖❖

(ରାଜ ସୁନାଖଳାରୁ ୧୯୯୯ ମସିହାରେ 'ପୁଷ୍ପରାଗ' ପତ୍ରିକାରେ ପ୍ରକାଶିତ)

# ଜୀବନ୍ତ ଶବ

ଶବ ମୋ ପଡ଼ିଛି ଏଠି,
ଦୁନିଆଁର ଶ୍ମଶାନରେ,
ନିଛାଟିଆ ବରଗଛ ମୂଳେ ।
ରଣଭଣ ବାସେ ପଚି ସଢ଼ି,
ଖାଆନ୍ତିନି ଶୃଗାଳ ଶାଗୁଣା ।
ନାକ ଟେକା, ଲାଞ୍ଛନା ଓ,
ଘୃଣିତ ଚାହାଣି,
ବିଷ ଦୃଷ୍ଟି ସମାଜର-
ମୋ ଉପରେ ଆଜି ।
ନ ଆସନ୍ତି ପାଶେ କେହି
ଉପେକ୍ଷିତ ବସ୍ତୁ,
ଜୀବନ ତ ନାହିଁ ଖାଲି
ମୁର୍ଦ୍ଦାର ପଡ଼ିଛି ।
କାନ୍ଦିବାକୁ ନାହିଁ କେହି,
କିଏବା କାହାର ?
ଥିଲାଯିଏ, ଗଲାସିଏ,
ଯମପାଶେ, ମାଗିବାକୁ
ମୋ ଜୀବନ, ଫେରିଲାନି ଆଉ ।
ସାବିତ୍ରୀ ସେ ସତୀତ୍ୱରେ
ଭୁଲାଇଲା ଯମ ।
ରହିଗଲା ସ୍ୱର୍ଗପୁରେ
କାହିଁକିବା ଫେରିବ ମର୍ତ୍ତ୍ୟରେ ?
ନିର୍ଜ୍ଜନେ ପଡ଼ିଛି, ଏକାକୀ ମୁଁ
ଜୀବନ୍ତ ଶବ ସତ୍ୟବାନ ।



# ଅଭିଶପ୍ତ ଯକ୍ଷ

ଅଭିଶପ୍ତ ଯକ୍ଷ ମୁହିଁ
ଘୂରି ବୁଲେ ମୋ ମନର,
ନିଃସଂଗତାମୟ ଅରଣ୍ୟରେ।
ଖୋଜିବୁଲେ ଅତୀତ ମୋ
ହଜିଗଲା ଯାହା
ହଜାଇ ଦେଇ ମୁଁ ଭାବେ
ଦୁନିଆଁରେ ସମସ୍ତେ ନିଜର।
କିନ୍ତୁ ମୁଁ ନିଜର ନୁହେଁ
କାହାର ବା କିଏ ମୋ ନିଜର !
ଯାହାକୁ ନିଜର କଲି
ସିଏ ମୋତେ କଲା ସାତପର ॥



# ବିଡ଼ମ୍ବନା

ଭିଜିଭିଜି ମୋ ଆଖିଲୁହର ବର୍ଷାରେ
ମୋ କାନ୍ଧରେ ବୋହି ବୁଲୁଚି ମୁଁ
ମୋ ମନର ପ୍ରାଣ ହୀନ ଶବ।
ଶ୍ମଶାନ ଜୁଇରେ ଜଳିବା ପୂର୍ବରୁ
ଜଳୁଛି ମୁଁ ହୁତୁ ହୁତୁ ହୋଇ,
ଯୌତୁକ ନିର୍ଯାତୀତା ବୋହୂଟିଭଳି
ପ୍ରତିଟି ମୁହୂର୍ତ୍ତରେ ,
ବିଚ୍ଛେଦ ଜୁଇରେ
ଭାଗ୍ୟର ବିଡ଼ମ୍ବନାରେ ॥



# ସାଥୀ

ସୁଖ, ଦୁଃଖ, ହସ କାନ୍ଦ,
ବିଚ୍ଛେଦ ମିଳନ,
ବିରହ ବେଦନା ଆଉ
ଆନନ୍ଦ, କଷଣ ।
ଜୀବନର ସଂଜ୍ଞା ଏହି,
ଏଇତ ଜୀବନ ।।
ସାହା ନାହିଁ, ରାହା ନାହିଁ
ସାଥୀର ବିହୁନେ
ସବୁ କିଛି ଅଛି, ଥିଲେ
ସାଥୀ ଏ ଜୀବନେ ।।
ସୁଖର ଦୁଃଖର ସାଥୀ
ଜୀବନର ଧେୟ,
ସାଥୀ ବିନା ଅସଂପୂର୍ଣ୍ଣ
ଜୀବନ ନିଶ୍ଚୟ ।

ସୁଖ ଦୁଃଖ ଭୋଗ ପାଇଁ
କ୍ଷେତ୍ର ଏ ଦୁନିଆଁ,
ସାଥୀ ବିନା ନାହିଁ ସୁଖ
ଜଳେ ଦୁଃଖ ନିଆଁ ।।
ପ୍ରତ୍ୟେକ ପ୍ରାଣୀ ଇଛନ୍ତି,
ଜୀବନର ସାଥୀ,
ସାଥୀ ହୀନ ଜୀବନରେ
ନାହିଁ ସୁଖ ଶାନ୍ତି ।।
ଅଶାନ୍ତି କେବଳ ଖାଲି
କେବଳ ଅଶାନ୍ତି ।।



# ମନ

ପାଇଥିଲି ଜୀବନେ ମୁଁ,
ମନପରି ମନଟିଏ,
ଖୋଜି ଖୋଜି ପାଏ ନାହିଁ
ହଜିଗଲା କାହିଁ ?
ସେ ମନରେ ଥିଲା କେତେ
ଆପଣାର କଥା ଆଉ,
ମୋ ପାଇଁ ଦରଦ,
ରଚିବାକୁ ସୁଖର ସଂସାର,
ମୋ ମନରେ ମିଶି ସେହିମନ,
ଗଢ଼ିଲା ତା ସ୍ୱପ୍ନର ସଉଧ।
କରି ଦେଇ ସାକାର ତା
ମନର ବାସନା, ଉଡ଼ିଗଲା-
ସେ ମନ ବିହଙ୍ଗୀ।
ଆର୍ତ୍ତନାଦ କରେ ସଦା,
ମନ ପକ୍ଷୀ ମୋର,
ଝୁରି ଝୁରି ସେ ମନ ବିହଙ୍ଗେ,
ଖୋଜି ଖୋଜି ପାଏ ନାହିଁ
ହଜିଗଲା କାହିଁ ? ?।।



# ଜୀବନ

ଜୀବନଟା ନୁହେଁ ଖାଲି
ଖାଇ ପିନ୍ଧି ବଂଚିବାର ପାଇଁ
କିଛି ସୁଖ, କିଛି ଦୁଃଖ,
କିଛି ହସ, କିଛି କାନ୍ଦ,
କିଛି ଆଲୋକ ,ଅନ୍ଧାର
ଆଉ ଉତ୍‌ଥାନ, ପତନ,
କିଛି ସରସ, ନିରସ
ଆଉ ଯୋଗ ଓ ବିୟୋଗ ।
ଏଇତ ଜୀବର ସଂଜ୍ଞା ?
ସରସତାର ଆଲୋକକୁ ବାଦ୍ ଦେଇ,
ନିରସତାର ଅଂଧକାରରେ
ବଂଚିବାର ରାହା ଆଜି ଖୋଜି ମୁଁ ପାଏନି,
ଏମିତି ଅଲୋଡ଼ା ଜୀବନ ନେଇ
ବଂଚିବାକୁ ଚ୍ହେନି ମୁଁ,ଜମାରୁ ଚ୍ହେଁ ନି ।



(ଫୁଲବାଣୀ "ବନ ଜ୍ୟୋତ୍ସ୍ନା ସାହିତ୍ୟ ସଂସଦ"ର "ଶେଷ ପାହାଚ" ୧୯୯୬ ସ୍ୱାଧୀନତା ଦିବସ ବିଶେଷାଙ୍କ ସଂଖ୍ୟାରେ ପ୍ରକାଶିତ ଓ ଶ୍ରେଷ୍ଠ କବିତା ଭାବେ ପୁରସ୍କୃତ ।)

# ପ୍ରତାରଣା

ଅଗ୍ନିକୁ ସାକ୍ଷୀରଖି
ଜୀବନର ସାଥୀଭାବେ,
ହାତଧରି ଚାଲିବାକୁ
ଦୁନିଆଁର କଣ୍ଟକିତ ପଥେ,
ଶପଥ ନେଇଥିଲ ତମେ
ଦେବ କନ୍ୟା ହୋଇ।
ନିରାଶାର ମରୁଭୂମିରେ
ଆଶାର ମରୁଦ୍ୟାନସମ,
ସାକାର କରିଦେଲ,
ଜୀବନର ଯେତେ ସବୁ ସ୍ୱପ୍ନ।
ଅଦିନ ଦଉଦରେ
ଆକସ୍ମିକ ବଜ୍ରାଘାତ ସମ,
ଚୂରମାର କରି ଦେଲ,
ଅତିକଷ୍ଟେ ଗଢ଼ିଥିବା,
ସ୍ୱପ୍ନର ସଉଧ।
ଜୀବନର ଚଲା ପଥରେ,
ନିହାତି ଆବଶ୍ୟକ ସମୟରେ
ବେସାହାରା କରି ଦେଲ,
ଅର୍ଦ୍ଧପଥେ, ଅସହାୟ ଭାବେ।
କେବେବିତ ଅନୁଭବ କରିନାହିଁ
ତୁମ ଅନାବିଳ ହୃଦୟରେ
ଛଳନାର ଲେଶ୍‌ମାତ୍ର ଚିହ୍ନ।
କେମିତି କହିବି ତମେ,
'ପ୍ରତାରଣା' କଲ ବୋଲି
ହଠାତ୍ ମୋ ହାତ ଛାଡ଼ିଦେଇ ।।



# ନିଦ

ଇଚ୍ଛା ହୁଏ:
ଶୋଇଯାନ୍ତି ନିଘୋଡ଼ ନିଦରେ,
ଚିରଦିନ ଶାନ୍ତିର ଶେଯରେ,
ରହନ୍ତାନି ମନେ ଟିକେ,
ଗ୍ଲାନି ଅବସାଦ,
ଦୁଃଖ ଯନ୍ତ୍ରଣାର,
ବ୍ୟଥା ବେଦନାର,
ବିଗତ ଅତୀତର,
ସୁନେଲି ସ୍ୱପ୍ନର,
ବିଦଗ୍ଧ ମନର ।।
ଭରିଥାନ୍ତା କେବଳ-
ଆଖିରେ ମୋ ନିଦ ଆଉ ନିଦ,
ଅଶେଷ ଆନନ୍ଦର,
ଚରମ ଶାନ୍ତିର
ପରମ ତୃପ୍ତିର ।।



(୧୯୯୬ ମସିହା ଜୁନ୍‌ମାସରେ ନବପ୍ରତିଭା ସାହିତ୍ୟ ସଂସଦ, ବାଙ୍କୀରୁ 'ଆଇନା' ରେ ପ୍ରକାଶିତ ।)

# ବାଲିଘର

ପ୍ରବଳ ପ୍ରଭଂଜନର ପ୍ରଚଣ୍ଡ ଆଘାତ ରେ,
ନିଶ୍ଚିହ୍ନ ବାଲିଘର, ବହୁ ଯତ୍ନେ ଗଢ଼ା,
ନିମିଷକେ ଭଗ୍ନ, ବରବଧୂ କ୍ରୀଡ଼ା,
ଆଖିର ପଲକେ, ଧୂଳିସାତ୍
ସ୍ୱପ୍ନର ସଉଧ ।
ନିର୍ବାପିତ ଆଶାର ପ୍ରଦୀପ ।
ଦର୍ଶାଇ ସୁବର୍ଣ୍ଣ ହରିଣୀ,
ହରିନେଲା ସୀତାରେ ରାବଣ,
ବ୍ୟଥା ଓ ବେଦନାହତ ମନ ନେଇ
ଝୁରନ୍ତି ବିକଳେ ରାମ,
ସୀତା ଗୁଣ ଗାଇ,
ବିଦଗ୍ଧ ମନ ପ୍ରାଣେ
ଅତୃପ୍ତିର କାମନା,
ଖିନ୍ନ ଭିନ୍ନ ହୃଦୟରେ ଅପୂର୍ଣ୍ଣ ବାସନା
ଅସମାପ୍ତ ଜୀବନର ଖେଳ ଆଉ ଭଗ୍ନ ବାଲିଘର ।।



# ନିଃସଂଗତା

ଦୁର୍ବିସହ ନିଃସଂଗ ଜୀବନ,

ଅସହ୍ୟ ମନର ଯନ୍ତ୍ରଣା,

ନିରବଚ୍ଛିନ୍ନ କର୍ତ୍ତବ୍ୟ-

ନିସ୍ତବ୍ଧ, ନିଥର,

ଅସ୍ଥିର, ଅବସନ୍ନ ପ୍ରାଣ,

ପାଥେୟ ଖୋଜେ-

କାୟା ଛାୟାର

ବିଦ୍ରୂପ କରେ କାଳ

ବିକଟାଳ ହାସ୍ୟେ ।

ଅହେତୁକ, ବିକଳ୍ପ,

ଅନିବାର୍ଯ୍ୟ ବିଧିର ବିଧାନ,

ନିରବତା, ନିର୍ଜ୍ଜନତା

ନିର୍ଲିପ୍ତତା, ନିସଂଗତା

ପ୍ରାପ୍ୟ ହତଭାଗ୍ୟେ ।



# ସଂପର୍କ

ସ୍ନେହ, ପ୍ରେମ, ଆଦର, ଭକ୍ତି
ଏବଂ ଭଲ ପାଇବାକୁ ନେଇ
ଗଢ଼ିଉଠେ ନିବିଡ଼ ସଂପର୍କ ।
ଭକ୍ତ ଓ ଭଗବାନ, ପିତା ଓ ପୁତ୍ର,
ମାତା ଓ କନ୍ୟା, ପତି ଓ ପତ୍ନୀ,
ପ୍ରେମିକ ଓ ପ୍ରେମିକା ମଧ୍ୟରେ ।।
ସଂପର୍କ ତୁଟିଯାଏ ସେତେବେଳେ,
ଯେତେ ବେଳେ 'ସୁ' 'କୁ' ହୋଇଯାଏ ।
ସୁସଂପର୍କ ବି ତୁଟିଯାଏ ବେଳେବେଳେ,
ଯେମିତି, ସୂର୍ଯ୍ୟ ଅସ୍ତଗଲେ-
ପଦ୍ମ ବିକଶିତ ହୋଇ ରହେନା,
ଚନ୍ଦ୍ର ଉଦୟ ନହେଲେ କଇଁ ଫୁଟେନା,
ଆଉ ଜ୍ୟୋତ୍ସ୍ନା ବିଧୌତ ରଜନୀର,
ପ୍ରତୀକ୍ଷାରେ ଚକୋର ଚକୋରୀ
ଝୁରନ୍ତି ପରସ୍ପରକୁ, ମିଳନ ଆଶାରେ ।
ଠିକ୍ ସେମିତି ଲୁଚି ଗଲ ତମେ,
ତୁଟାଇ ଦେଇ ସମସ୍ତ ସଂପର୍କ,
ଚିର ଦିନ ପାଇଁ । ମୁଁ ଖାଲି-
ଝୁରୁଚି ଓ ଝୁରୁଥିବି, ପୁଣିଥରେ-
ପର ଜନ୍ମରେ, ତୁମ ସହିତ
ସଂପର୍କର ନିବିଡ଼ତାକୁ ।।

# ଆହତମରାଳ

ନିଷ୍ଠୁର ବିଧାତାର,
ନିର୍ମମ ଶରାଘାତରେ,
ଆହତ, ମନର ମରାଳ ।

ଦିଗହରା ନାବିକର ସମ,
ଭାସୁଛି ତରଣୀ ଆଜି
ସଂସାର ସାଗରେ
ଲକ୍ଷହୀନ ପଥେ ।

ଅନାହୂତ ବିକଟାଳ-
କାଳର କରାଳ ଦୁର୍ବିପାକ,
ଅହରହ ନୃତ୍ୟରତ,
ସମ୍ମୁଖରେ ବିରୂପ ଭଂଗୀରେ ।

ଅତୃପ୍ତ ପ୍ରାଣରେ ଭରା
ଦୁର୍ବିସହ ନିସଂଗତାର ବିତୃଷ୍ଣା ।

ହୃଦ ପିଞ୍ଜରାରୁ ମୁକ୍ତି ଇଛେ
ଆହତ ମୋ ମନର ମରାଳ ।।



# ସଂଧ୍ୟା

ଜାଣି ହୁଏନି, ଦିନଟା କେମିତି ସରିଯାଏ,
ସଂଧ୍ୟା ଆସିଲେ, ଏ ଅମାନିଆ ମନଟା ଖାଲି,
କେମିତି ଛଟ ପଟ ଛଟ ପଟ ହୁଏ ।
କାହିଁକି କେଜାଣି କିଛି ଭଲ ଲାଗେନି ଜମା ।
ସଂଧ୍ୟାର ବହଳ ଅଂଧାରରେ,
ସଂଜବତୀ ତ ଦୂରର କଥା .
ଧୂପକାଠିଟାଏ ବି ଜଳେନି !
ଠାକୁରତ ଅପୂଜା,
କିଏ ବା ପଚ୍ଚରେ କାହାକୁ ?
ସମୟ ଥିଲା, ସବୁ ଠିକ୍ ଥିଲା,
ସଂଧ୍ୟା ଏମିତି ଆସୁଥିଲା,
ଏବେ ବି ଆସୁଛି ,ଆସୁଥିବ ବି,
କିନ୍ତୁ ଦୀପାଳୀରେ ତ ଆଉ ତେଲ ନାହିଁ ?
ଲୁହରେ କଣ ଜଳିବ ସଳିତା ?
ସେଇମିତି ଶୋଇ ପଡ଼େ ସଂଧ୍ୟା,
ନିବିଡ଼ ତମସା ରାତ୍ରିର,
ଘନ କୃଷ୍ଣ ପଣତ କାନିରେ ।
ଆକାଶର ଝିଲି ମିଲି ତାରା ଗହଣରେ
ନିଘୋଡ଼ ନିଦ୍ରାରେ,
ସ୍ୱପ୍ନର ମହଲରେ ।



# କ୍ଷୁଧା

ପଶୁ ପକ୍ଷୀରୁ ଜୀବଜନ୍ତୁ ପର୍ଯ୍ୟନ୍ତ,
ମଣିଷରୁ ଦେବତା ପର୍ଯ୍ୟନ୍ତ,
କେହିବି ବାଦ୍ ଯାଆନ୍ତିନି
କ୍ଷୁଧାର କବଳରୁ ।
କ୍ଷୁଧା କେବେ ମରିଯାଏନି,
ବଂଚି ଥିବା ଯାଏ ଜୀବ ।
ବୟସର ବୃଦ୍ଧି ସଂଗେ ସଂଗେ,
କମି କମି ଆସେ ସିନା କ୍ଷୁଧା
ଅସହ୍ୟ କିନ୍ତୁ ତାର ଯନ୍ତ୍ରଣା ।
ପରିସ୍ଥିତିରେ ପଡ଼ି, ବାଧହୋଇ,
ସହିବାକୁ ହୁଏ, ଅନେକ ସମୟରେ
କ୍ଷୁଧା ଯେତେ ବେଳେ ଲାଗେ,
ଖାଇବାକୁ ଭାରି ଇଛା ହୁଏ ।
ନଖାଇଲେ ସତେ ଯେମିତି
ବଂଚି ହେବନି ଜମା ।
ହିତା ହିତ ଜ୍ଞାନ ରହେନା-
କ୍ଷୁଧାର ଜ୍ୱାଳାରେ ।
ଭଲ ଖାଇବା ଦରବଟିଏ ଦେଖିଲେ,
ଭୀଷଣ ଇଛା ହୁଏ ଖାଇବାକୁ,
ବଡ଼ ବିଚିତ୍ର ଏ କ୍ଷୁଧାର କରାମତି ।।



# ସ୍ମୃତିତୁମ, ମନ ଆଇନାରେ

ତମେ ଗ୍ଲଲିଗଲା ପରେ
ବେଶ୍ ଆରାମରେ ଅଛି ମୁଁ ।
ଖାଉଛି, ପିଉଛି ଶୋଉଛି,
ଅସୁବିଧା ନାହିଁ କିଛି ।
ବିଗତ ଅତୀତର ସ୍ମୃତିରୁ
ଆକଣ୍ଠ ଭୋଜନ କରି,
ଆଖିର ଝରଣାରୁ ଅବିଶ୍ରାନ୍ତ-
ଝରୁଥିବା ତପ୍ତ ଅମାନିଆଁ-
ଜଳ ପାନ କରି, ବେଶ୍ ଆରାମରେ
ବଂଚିଛି ମୋ ଅନିଛା ସତ୍ୱେ
ଆଉ ଶୋଉଛି, ନିଘୋଡ଼ ନିଦରେ,
ସ୍ମୃତିର ଶେଯରେ, ସ୍ୱପ୍ନର
ସଂଗିନୀ ସାଥିରେ ।
ରାତି ପାହୁଛି, ସକାଳ ହେଉଛି,
ପୁଣି ଆସୁଛି ରାତି ।
ନା ସରୁଛି ସ୍ୱପ୍ନ, ନା ଶୁଖୁଛି ଲୁହ ।
ମନର ଆଇନାରେ ସ୍ମୃତି ତୁମ
ସେଇମିତି ରହିଯାଇଛି,
ଅଲିଭା ଦାଗ ହୋଇ ।
ମୋର ହୋଇ କେହି ନଥିବା-
ଦୁନିଆଁରେ, ଏକୁଟିଆ କରିଦେଇ,
ଆର ପାରିକୁ ଗ୍ଲଲିଗଲା ପରେ ତୁମେ ॥



# ବୈଶାଖୀ ଜ୍ୱାଳା

ଧୂ ଧୂ ଜଳୁଛି ବୈଶାଖ,
ଆଉ ଜଳୁଛି ମୋ ମନ,
ନିଃସଂଗତାର ଅସହ୍ୟ
ରୌଦ୍ର ତାପରେ, ସବୁକିଛି
ନିସ୍ତବ୍ଧ, ଶୂନଶାନ।
ମନ ମୋ ଯାଇଛି ମରି,
ସମୟର ବୈଖାଖୀ ଜ୍ୱାଳାରେ।
ବିବିକ୍ତ ପଥିକ ମୁଁ,
ଶ୍ରାନ୍ତ, କ୍ଳାନ୍ତ, ଅବସନ୍ନ-ବିସନ୍ନ।
ପାରେ ନାହିଁ ଗ୍ଭଲି ଏକା, ଏକା,
ନିସଂଗ ବୈଶାଖର,
ଡହ ଡହ ଉତପ୍ତ,
ମରୁ ବାଲିରେ ।।



# ଅଳିକ ଆଶା

ଚନ୍ଦ୍ରଟା ଶୋଇଗଲା
ନିସ୍ତବ୍ଧ ରାତ୍ରିର ପଣତ କାନିରେ,
ତାରାର କୋଳରେ, ଗହମ ନିଦରେ,
ବିକ୍ଷିପ୍ତ ଜ୍ୟୋସ୍ନାର
ଚଳାଏ ମଧୁ ମଦିରା-
ପାନ ଆଶେ, ତୃଷିତ ଅନ୍ତରେ,
ଖୋଜିବୁଲେ ଚୁମିବାକୁ
ଝଲକାଏ ସ୍ନିଗ୍ଧତା, ରାକାରଜନୀର।
ଇଚ୍ଛାହୁଏ ଧରିବାକୁ,
ମଲ୍ଲୀ ଫୁଲର
ମେଞ୍ଚାଏ ସୁବାସିତ ଦୀପ୍ତିକୁ।
ଅଳୀକ ଆଶା ନେଇ, ପ୍ରତୀକ୍ଷାରତ
ଅବସନ୍ନ,ବିସନ୍ନ, ବିତସ୍ପୃହ
ବିରହୀ ଚକୋର।



(ସାହିତ୍ୟ ମନ୍ଦିର ନିବେଦିତ କବିତା ସଂକଳନ 'ମୟୁରୀ'ରେ ଘୋଡ଼ାବନ୍ଧ କଳାହାଣ୍ଡିରୁ ୨୦୦୦ ମସିହାରେ ପ୍ରକାଶିତ।)

# ଭିକାରୀ

ଜୀବନର ସହରରେ-
ଭିକାରୀ ସାଜି ମୁଁ ଆଜି,
ଝୁଲି ଧରି ବୁଲେ ରାଜ ଦାଣ୍ଡେ।
କିଏ ମୋତେ ଦେବ ସ୍ନେହଭିକ୍ଷା ?
କାଙ୍ଗାଳ ମୁଁ ସ୍ନେହ ଓ ପ୍ରେମର।

ନଥିଲି କାଙ୍ଗାଳ ମୁହିଁ ନଥିଲି ଭିକାରୀ,
ପୂରିଥିଲା ଦିନେ ସବୁ ଗନ୍ତାଘରେ ମୋର।
ଲୁଟି ନେଇ ସବୁ କିଛି ମୋ ଭଣ୍ଡାର ଘରୁ,
କରି ଦେଇ ଦୁନିଆଁର ଦାଣ୍ଡରେ ଭିକାରୀ
ଭରିଦେଲା ଆଖିରେ ମୋ ଲୁହର ଶ୍ରାବଣ ।

ବୁଲୁଚି ମୁଁ ସେଇ ଦିନୁ ମାଗି
ଦ୍ୱାରେ ଦ୍ୱାରେ ପତାଇଣ ହାତ
ସ୍ନେହ କ'ଣ ମିଳିବ ମାଗିଲେ ?
ଏ ଦୁନିଆଁ ବଡ଼ ସ୍ୱାର୍ଥପର,
ଭିକାରୀ କୁ ପଚ୍ଛରେ ବା କିଏ ? ?



# ଅମୃତ

ଅମୃତରେ ବି ନିଶା ଥାଏ ।
କଳ୍ପନାରେ ନଥିଲା ମୋ ଏହା ।
ଅଜର ଅମର ହେଲେ
ପାନକରି,ଥରେ ମାତ୍ର ଦେବେ ।
ଜୀବନଟା ସାରା ପାନ କଲି ମୁଁ ,ତଥାପି,
ମନ ମୋର, ଖୋଜେ ସଦା
ସେଇ ସେ ଅମୃତ ।
ପରଷି ଅମୃତ ମତେ
ଯେତେ ମୁଁ ଇଛିଲି,
ବ୍ୟତିବ୍ୟସ୍ତ ହୋଇ ଶେଷେ,
ତୁଟାଇ ବଂଧନ
ହୋଇଗଲା ଅନ୍ତର୍ଦ୍ଧାନ
ସେ ମାୟା ମୋହିନୀ,
ସଂଗେ ନେଇ ଅମୃତ କଳସ ।
ମଦନିଶା ଘାରେ ସିନା,
ମଣିଷ ମନକୁ ।
କରୁଛି ଅଥୟ ସଦା
ମନ ପ୍ରାଣ ମୋର
ସେଇ ଅମୃତ ର ନିଶା ।



# ପରିବର୍ତ୍ତନ

ଓଲଟ ପାଲଟ ହୋଇଗଲା ଯେତେସବୁ
ଜୀବନର ପରିକଳ୍ପନା ଓ ବୁନେଇ ସପନ।
ଏପଟ ସେପଟ ହୋଇଗଲା ସବୁକିଛି-
ବଂଚିବାର ଆଶା ଓ ଆକାଂକ୍ଷା ।
ଲୁଚିଗଲା ଜହ୍ନ ମୋର ଜୀବନାକାଶର,
ସ୍ୱପ୍ନ ସବୁ ସରିଗଲା ମନ ଗଲା ମରି
ଭରିଗଲା ନୟନ ଯମୁନାରେ ଶ୍ରାବଣର ବନ୍ୟା।
'କେମିତି ବଂଚିବି' ଷଡ଼ାକ୍ଷର ମନ୍ତ୍ର
ଜପେ ବସି ଦିବସ ଶର୍ବରୀ।
ନିର୍ଭରଶୀଳ ମନ ମୋର ଖୋଜେ କାରେ,
ଜାହିର କରିବାକୁ ଆଦେଶ ନିର୍ଦ୍ଦେଶ।
କିନ୍ତୁ ହାୟ ! ଆଦେଶ ମୋ ଫେରିଆସେ,
ମୋ ନିକଟେ ବୁମେରାଂ ହୋଇ !
ଅଧୀର ମୋ ମନ ପ୍ରାଣ ସେ ପ୍ରତି ଧ୍ୱନିରେ ।
କହି ମୁଁ ପାରେନା କାରେ ମନର ବେଦନା।
ଅଚିହ୍ନା ମୋ ପାଇଁ ଆଜି ଯେତେ ଚିହ୍ନା ମୁହଁ।
ପରିବର୍ତ୍ତଶୀଳ ଏ ଦୁନିଆଁ ବକ୍ଷରେ
ବଂଚିଛି ମୁଁ, ବଂଚିଥିବି, ମୋ ଅନିଚ୍ଛା ସତ୍ୱେ
ଉତ୍ତରଣ ଜୀବନେ ମୋ, ଏ ପରିବର୍ତ୍ତନ
ହତବାକ୍ ମୁହିଁ, ଏକି, ବିଧିର ବିଧାନ ?



# ବିବ୍ରତ

ମନ ମୋ ମାନେନା କ୍ଷମା,
ଯେତେ ଯିଏ ଦେଲେ ଆଶ୍ୱାସନା,
ଦିନୁ ଦିନ ଲାଗେ ଖାଲି
ନିରାଶ ନିରାଶ ଆଉ
ହତାଶ ହତାଶ ।
ନୈରାଶ୍ୟର ଘନ ଅନ୍ଧକାର
ଘୋଟିଯାଏ ଆଖି ଆଗେ ମୋର
ବଂଚିବାର ଯନ୍ତ୍ରଣାରେ-
ଛଟପଟ ହୁଏ ଖାଲି
ଅହରହ ମନ ବେଦନାରେ ।
କିଂ କର୍ତ୍ତବ୍ୟ-ବିମୂଢ଼ ମନ ମୋର ।
ହଜିଯାଏ ସ୍ମୃତିର ଅରଣ୍ୟରେ,
ପଥହରା ପଥିକର ସମ ।
ଖୋଜି ଖୋଜି ଅତୀତକୁ,
ବିବ୍ରତ ମୁଁ ହୁଏ ଖାଲି-
ଅଧୈର୍ଯ୍ୟ ପ୍ରାଣରେ ।
ଅହେତୁକ ଆଶା ମୋର
ପ୍ରହେଳିକା ସମ,
ନିଶ୍ଚିହ୍ନ ହୋଇ ଯାଏ
ଦୂର ଦିଗ୍‌ବଳୟର
ସୀମାହୀନ ଇତିବୃତ୍ତ ମଧ୍ୟେ ॥



# ପ୍ରତୀକ୍ଷା

ହେ ମୋର ସୁନେଲି ସ୍ୱପ୍ନମାନେ !
ଛିନ୍‌ଭିନ୍ କରିଦେଇ ମୋ ମନର ବୀଣା ତନ୍ତ୍ରୀରେ,
ଚୁରମାର୍ କରି ଦେଇ ମୋ ହୃଦୟର କାଚଘରକୁ,
ଚାଲିଗଲ ତୁମେ ବିସ୍ମୃତିର ଅଥଳ ସମୁଦ୍ରକୁ।
କୁହ ତେବେ ? ବେଳେ ବେଳେ କାହିଁ,
ଛୁଇଁ ଛୁଇଁ ଯାଏ ତୁମ ପ୍ରତାରଣାର ଉତ୍ତାଳତରଂଗ,
ମୋ ମନ ଗହନର ନିକାଂଚନ ଶ୍ମଶାନକୁ।
ଯେଉଁଠି ଜଳୁଛି ଖାଲି ଧୂ, ଧୂ,
ଦୁଃଖ ଯନ୍ତ୍ରଣାର ଚିତା, ଆଉ ଅଛି ଖାଲି,
ଗଦାଗଦା ପାଉଁଶ ଅଂଗାର ଓ
ଚୂନା ଚୂନା ହାଡ଼ର କୁଢ଼କୁଢ଼ ସ୍ମୃତି ।
ହେମୋର ସ୍ୱପ୍ନମାନେ,
ଖୁବ୍ ଭଲ କରିଛ, ଚାଲିଯାଇଛ।
କ'ଣ ବା ଦେଇ, ସତ୍କାର କରିଥାନ୍ତି ମୁଁ ତୁମକୁ ?
ଆଜି ଅନ୍ତରର ବ୍ୟଥା ଓ ବେଦନା, ମୋର ଖାଦ୍ୟ।
ମୋ ଆହତ ମନର ଅନୁତପ୍ତ ନୟନାଶ୍ରୁ-
ମୋର ପାନୀୟ। ମୁଁ ଆଜି-
ବ୍ୟଥିତ, ବିବ୍ରତ, ବ୍ୟତିବ୍ୟସ୍ତ ଆଉ
ପରିତ୍ୟକ୍ତ, ପ୍ରତାରିତ ଓ ଅଭିଶପ୍ତ।
କଣ ବା ଅଛି ? ମୋର ବୋଲି କହିବାକୁ,
ଏ ସ୍ୱାର୍ଥପର ଦୁନିଆଁରେ ?
ତେଣୁ, ହେ ମୋର ସ୍ୱପ୍ନମାନେ,
ଚାଲିଯାଅ, ଚିରଦିନ ପାଇଁ,
ଉତ୍ତରଣ ଜୀବନର ଶେଷ ଦୀର୍ଘଶ୍ୱାସ ପର୍ଯ୍ୟନ୍ତ।
ଅନ୍ତିମ ଶାନ୍ତିର ପ୍ରତୀକ୍ଷାରେ
ମୁଁ ଆଜି ଉତ୍କଂଠିତ ।।

# ଅବାସ୍ତବ ସ୍ୱପ୍ନ

ନିଝୁମ ରାତ୍ରିରେ, ନିର୍ଜନ କୋଠରୀରେ,
ଆଉ ନିଃସଂଗ ଶେଯରେ,
ଆଜି ମୁଁ ଦେଖୁଛି, ବାସ୍ତବସମ
ପ୍ରତୀୟମାନ୍ ଅବାସ୍ତବ ସ୍ୱପ୍ନ ।
ସେଇମୁହଁ, ସେଇଦେହ ।
ସେଇକଥା, ସେଇହସ ।
ମୋ ପ୍ରିୟାର, ମୋ ପ୍ରେମିକାର;
ମୋ ଅଭିସାରିକାର ।
ଜଡ଼ି ଯାଏ ତନୁଲତା ଅଙ୍ଗାଙ୍ଗୀ ଭାବରେ,
ନିବିଡ଼ ଆଶ୍ଳେଷରେ, ଚୁମି, ଚୁମି ଗୋଲାପି ଅଧରେ ।
ଆହା, କି ସ୍ୱର୍ଗ ? କି ଆନନ୍ଦ ?
ଅକଥନୀୟ,ଅବର୍ଣ୍ଣନୀୟ ଅନୁଭୂତି ସେ ।
ଅଚାନକ ଫେରି ଆସେ ସଂବିତ୍
ତୁଟିଯାଏ ମୋହ,ମିଳେଇ ଯାଏ ସବୁ,
ପାଣି ଫୋଟକାପରି । ସବୁମିଛ, ·
ସବୁ ଅବାସ୍ତବ, ସବୁ ମରିଚିକା, ସବୁ କୁହେଳିକା ।
ସ୍ୱପ୍ନ କ'ଣ ବାସ୍ତବ ସତେ ?
ବାସ୍ତବ ତ ସ୍ୱପ୍ନ ନୁହେଁ,
ସ୍ୱପ୍ନ, ସ୍ୱପ୍ନ, ବାସ୍ତବ, ବାସ୍ତବ,
ବାସ୍ତବ ପରି ମନେ ହୁଏ ବେଳେ ବେଳେ ସ୍ୱପ୍ନ ।।
ସବୁ କିନ୍ତୁ ଅବାସ୍ତବ ।
ଅବାସ୍ତବ ଏ ମୋହମାୟା ଭରା ଦୁନିଆଁ ।



# ଅଭୀପସା

ଦଗ୍ଧୀଭୂତ ଜୀବନର ପ୍ରତିଟି ମୁହୂର୍ତ୍ତ,
ଦୁର୍ବିସହ ହୁଏ ଆଜି, ଦୁନିଆଁରେ ମୋର ।
ହୃଦୟ ବୀଣାରେ ଝଂକୃତ, କରୁଣ ରାଗିଣୀ,
ମଧୁର ମୂର୍ଚ୍ଛନା ତୋଳେ ନାହିଁ ଛିନ୍ନ ବୀଣାତାର ।
ଉତ୍‌କଣ୍ଠିତ ମନ ଖୋଜେ,
ଅନ୍ୟ ଏକ ଦୁନିଆଁରେ ସ୍ଥିତି ।
ନଥିବ ଯେଉଁଠି ଗ୍ଲାନି, ଚିନ୍ତା ଅବସାଦ ଆଉ
ଯନ୍ତ୍ରଣା, ଯାତନା ବ୍ୟଥା, ଜରା, ମୃତ୍ୟୁ ଶୋକ ।
ଥିବଯହିଁ ନିତ୍ୟାନନ୍ଦ, ପ୍ରେମ, ସୁଖ ଶାନ୍ତି,
ଉଡ଼ିଯାଉ ମୋ ମନ ବିହଙ୍ଗ, ସେଇ ନିତ୍ୟ ଧାମେ।
ଅଧିର ମୋ ପଞ୍ଚ ପ୍ରାଣ ସଦା ।
ଭୁଲି ସବୁ ଦୁଃଖ ଶୋକ, ବ୍ୟଥା ଓ ବେଦନା,
ଶୁଣିବି ସଦା ମୁଁ ସେଠି, ମୋହନ ମୁରଲୀ ବେଣୁ ।
ସେଇ ମୋ ପରମ ଗତି
ସେଇ ମୋର ମୁକ୍ତି ଆଉ ତୃପ୍ତି ॥



# ଜଳୁଚି ମୁଁ ସ୍ମୃତିର ନିଆଁରେ

ଆହତ ମନ ମୋ ଆଜି,
ବ୍ୟଥିତ, ବିବ୍ରତ।
ଜୀବନଟା ଲାଗେ ଖାଲି
ନିରସ ନିରସ ଆଉ ବିରସ ବିରସ ।
ଗୋଲାପ କଳିର ହସ
ମଲ୍ଲୀର ସୁବାସ
ଆଣେନି ପୁଲ୍ଲକ ପ୍ରାଣେ,
କିବା ଉନ୍ମାଦନା ।
ସବୁ କିଛି ଲାଗେ ଖାଲି,
ଖାପଛଡ଼ା ଖାପଛଡ଼ା ଆଜି
ମନ ମୋ ମରିଛି ଅବା
ବଂଚିଛି ଜାଣେନି,

ଦୁନିଆଁଟା ପରେ ଆସେ
କ୍ରୋଧ ଈର୍ଷ୍ୟାଭାବ,
ଦେଖି ଦେଖି ସବୁ କିଛି
କିଛି ବି ନ ଦେଖି
ଭାବୁଛି ସଦା ମୁଁ ଖାଲି
ଭାବୁଥିବି ବସି ।
ସବୁତ ଯାଇଛି ସରି
ଜୀବନରୁ ମୋର,
ରହିଛି କେବଳ ବାକି
ଜଳିବାକୁ ଚିତା ଅନଳରେ ।
ମୃତ୍ୟୁ ପରେ ଶବ ସିନା ଜଳେ ଯାଇ
ଶ୍ମଶାନ କୂଇରେ, ମୁଁ କିନ୍ତୁ
ଜଳୁଛି ବଂଚି ନିତି ନିତି
ମନ ବେଦନାରେ ସ୍ମୃତିର ନିଆଁରେ ।



# ନିଷ୍ପ୍ରଭ ପ୍ରଦୀପ

'ସ୍ୱପ୍ନର ମହଲ ଗଢ଼ି ,ସ୍ୱର୍ଗର ରାଜ୍ୟରେ,
ଇନ୍ଦ୍ରସାଜି ଶଚି ସଂଗେ, ରଚିବାକୁ ରାସ,
ନଥିଲା କଳ୍ପନା କିବା, ନଥିଲା ବି ଆଶା।
ସଂପୂର୍ଣ୍ଣ ଜୀବନ ନେଇ, ସୁଖର ଦୁଃଖର,
ବଂଚିବାର ଅଭିପ୍ସାରେ,
ଭୁଲି ସବୁ ଦୁଃଖ,ଶୋକ, ବ୍ୟଥାଓ ବେଦନା,
ଜୀବନର ଜଂଜାଳରେ ହୋଇ ଆତ୍ମହରା,
କିଛି ଦେବା ଓ ପାଇବାର, ଆନନ୍ଦରେ,
ଲଭିବାକୁ ଶାନ୍ତି ଆଉ ତୃପ୍ତି,
ଇପ୍ସିତ ବାସନା ମୋ, ହେଲା ପରାଭୂତ ।
ଶରାହତ ବିହଙ୍ଗମ ସମ
ଉତ୍ତରଣ ଜୀବନ ମୋ
କରେ ଆର୍ତ୍ତନାଦ ।
ନୈରାଶ୍ୟର ନିବିଡ଼ ତମିସ୍ରାରେ
ନିଷ୍ପ୍ରଭ ମୋ ଜୀବନ ପ୍ରଦୀପ ।।



# ମୃତ୍ୟୁ

ଡ଼ାକିଲେ ଆସନା ତୁମେ
ନ ଡ଼ାକିଲେ ଆସ,
ମଣିଷ ଜାଣେନା କେବେ
ସରିଯାଏ ତାର ପରମାୟୁ ।
ଅକସ୍ମାତ୍ ଆସ ତୁମେ
ଛାଡ଼ି ଯାଏ ପିଣ୍ଡରୁ ପରାଣ,
ପ୍ରାଣ ବାୟୁ ଉଡ଼ିଗଲେ
ପିଣ୍ଡ ସତେ କେତେ ନାରଖାର।
ଶବ କହି, ନେଇଯାନ୍ତି ଶ୍ମଶାନ କୂଇକୁ
ଜଳି ପୋଡ଼ି ଚିତାଗ୍ନିରେ
ହୁଏ ଭସ୍ମିଭୁତ ।
ଦିନେ ଯେ ନିଜର ଥିଲା,
ଅତି ଆପଣାର,
ମୃତ୍ୟୁ ତୁମେ କରିଦିଅ,
ତାକୁ ସତେ କେତେ ପର
କେତେ ଭୟଂକର ।
ପ୍ରେତାତ୍ମା କହି ହୁଅନ୍ତି, -
ଭୟରେ କାତର,
ଜନ୍ମ ହେଲେ ସୁନିଶ୍ଚିତ ମୃତ୍ୟୁ।

ଜାଣିବି ମଣିଷ କରେ

କେତେ ଗର୍ବ କେତେ ଆସ୍ଫାଳନ,.

ମୃତ୍ୟୁ ଯେବେ ଆସ ତୁମେ-

ଧରି କାଳ ପାଶ,

ଭାଂଗିଯାଏ ସବୁଦମ୍ଭ ସବୁ ଅହମିକା।

ଡ଼ରାଇ ପାରେନା କିଏ ତୁମକୁ ସଂସାରେ

ଡ଼ରନ୍ତି ସମସ୍ତେ ଜାଣି ତୁମ ଆଗମନ ।

କାଳ ତୁମେ ବିକଟାଳ ରୂପ ଧରିଆସ,

ନେଇ ଯାଅ ଯେତେ ସବୁ-

କଂସ, କେଶୀ, ରାବଣ ଓ କୁମ୍ଭକର୍ଣ୍ଣ ମାନଙ୍କୁ।

ବାଦ୍ ବି ପଡ଼ନ୍ତିନି ରାମକୃଷ୍ଣ

ବୁଦ୍ଧ ଆଉ ଗାଂଧୀ ମହାତ୍ମା,

ତଥାପି ହେ ମୃତ୍ୟୁ,

ତୁମକୁ ସେ ଜୟ କରେ,

ମରି ବି ଅମର ହୁଏ

ଚାଲେ ଯିଏ, ସତ୍ୟ, ନ୍ୟାୟ-

ଆଉ ଧର୍ମ ମାର୍ଗେ।ହେ ମୃତ୍ୟୁ !

ମୁଁ କିନ୍ତୁ ଚାହୁଁନି ଆଉ-

ବଂଚିବାକୁ ଦୀର୍ଘକାଳ, ଭୋଗିବାକୁ ଜରା,

ରୋଗ କଷ୍ଟ। କରୁଚି ଆହ୍ୱାନ ତେଣୁ

ଆସ ଶ୍ରୀଘ୍ର, ନେଇଯାଅ,

ତୁମ ପାଖେ ମୋତେ ।



# ଆଷାଢ଼ ଆସିଛି

ଜ୍ୟେଷ୍ଠର ଅସହ୍ୟ ଜ୍ୱାଳା ଓ ଯନ୍ତ୍ରଣାକୁ,
ଶାନ୍ତ ଶୀତଳ ଓ ସରସ କରିଦେଇ,
ହୃଦୟରେ ଭରିଦେଇ
ଆଶା, ଆକାଂକ୍ଷା ଓ ତୃପ୍ତିର କାମନା,
ଆଷାଢ଼ ଆସିଛି ନେଇ,
ଅସରା ଅସରା ସାନ୍ତ୍ୱନା
ଓ ସମ ବେଦନାର ବର୍ଷା ।।
ବୃକ୍ଷଲତାର ସବୁଜ,
କୋମଳ ପତ୍ର ଗହଳରେ,
ମଲ୍ଲୀ, ମାଳତୀ, ଜାଇ, ଜୁଇ,
ଓ ହେନାର ସୁଗନ୍ଧରେ
ଆଷାଢ଼ ଆସିଛି ନେଇ
ମୌସୁମୀର ମହକରେ
ପ୍ରାଣର ପ୍ରାଚୁର୍ଯ୍ୟ ।।
ବିରହୀର ବେପଥୁ ଭରା ଅନ୍ତରକୁ
କ୍ଷତ ବିକ୍ଷତ କରି ଦେଇ,
ନିଃସଂଗ ଜୀବନରେ ଭରିଦେଇ,
ହା, ହତାଶାର ଦୁର୍ବିସହ
ବ୍ୟଥା ଓ ବେଦନା,
ଆଷାଢ଼ ଆସିଛି ନେଇ,
ଆଖିରେ ଅସରନ୍ତି ଲୁହର ବର୍ଷା ।।



# ଭଗ୍ନ ହୃଦୟ

ହୃଦୟର କାଚଘର
ଛିନ୍ ଛତ୍ର, ଖଣ୍ଡ ବିଖଣ୍ଡିତ !
ପ୍ରଚଣ୍ଡ ପ୍ରଭଂଜନର,
ପ୍ରବଳ ପ୍ରତିଘାତରେ,
ବିଦଗ୍ଧ ପ୍ରାଣ ମୋ ଆଜି,
ଖୋଜେ ଖାଲି ମୃତ୍ୟୁ ଆଉ ମୃତ୍ୟୁ ।
ମୃତ୍ୟୁତ ଆସେନି କେବେ-
ପାଶକୁ ଆହ୍ୱାନେ,
ଯିବାକୁ ହେବ ତା ପାଶେ,
ମନ ମୋ ଉଦ୍‌ବିଗ୍ନ ।
ଜୀବନରେ ନାହିଁ ଯଦି-
ସୁଖ ଆଉ ଶାନ୍ତି,
ବଂଚିବାରେ ସ୍ପୃହା କିବା
ଭଗ୍ନ ହୃଦୟରେ ? ?



# ଅବଶିଷ୍ଟ ଆୟୁଷ

ଜୀବନର ଚଲାପଥେ,
ଏକା ଏକା ଚ୍ଛଲେ ଆଜି,
ଅବସନ୍ନ ବିଷଣ୍ଣ ମୁଁ,
ସାଥୀହୀନ ପାନ୍ଥ ।
ନିଃସଂଗ ଜୀବନେ ମୋର
ଦୁର୍ବିସହ ଅନ୍ତର୍ଦାହ ଖାଲି ।
ଚତୁର୍ଦିଗ ଶୁନ୍‌ଶାନ୍, ଲାଗେ ଖାଁ ଖାଁ,
ଅଶ୍ରୁଳ ଆବେଗ' ଭରା-
ମର୍ମାନ୍ତିକ ବ୍ୟଥା ଓ ବେଦନା,
ଅନ୍ତର ମୋ ଦଗ୍ଧକରେ ବାଡ଼ବାଗ୍ନି ସମ ।
ଭୀତତ୍ରସ୍ତା ବନ୍ୟ କୁରଙ୍ଗୀ ସଦୃଶ,
ଅସ୍ତବ୍ୟସ୍ତ, ବିବ୍ରତ ଓ ବ୍ୟଥିତ ପ୍ରାଣରେ,
ଚ୍ଛଲିଚି ମୁଁ ଚ୍ଛଲିଥିବି ଏକା ଏକା,
ଅବଶିଷ୍ଟ ଆୟୁଷମୋ ଲକ୍ଷହୀନ ପଥେ ॥



# ଏକେଲା

ଏକେଲା ମୁଁ ଆସିଥିଲି
ଯିବି ବି ଏକେଲା,
ଜୀବନର ମଧ୍ୟାହ୍ନରେ
କଲି ଯାରେ ସାଥୀ,
ଚାଲିଗଲା ସଂଧ୍ୟାରେ ସେ
କରିଣ ଏକେଲା ॥
ପାହିବାକୁ ରାତି ଆଉ
ବାକି ଅଛି କିଛି,
ଏକେଲା ଏ ଜୀବନଟା
ଲାଗେ ଖାଲି ଖାଲି,
ଅମାନିଆଁ ମନଟା ମୋ
ଜମାରୁ ବୁଝୁନି,
ବୁଝାଇଲେ ଯେତେ ଯିଏ
ବୁଝି ମୁଁ ପାରୁନି ॥

ଏକେଲା ମୁଁ ଥିଲିପୁଣି
ଏକେଲା ତ ହେଲି,
କାହିଁକି ଏକେଲା ତେବେ
ହୁଏ ଦୁର୍ବିସହ ?
ମିଳିବନି ସାଥୀ ଆଉ
ଏ ଜୀବନେ କେବେ
ତଥାପି କାହିଁକି ପ୍ରାଣ
ଖୋଜେ ଅହରହ ॥
ଏ ଦୁନିଆଁ ଅଟେ ଏକ
ଅଭିନୟ ମଂଚ।
ନାଟକର ଯବନିକା-
ପଡ଼ିଗଲେ ଥରେ,
ମିଳିବନି ସାଥୀ ଜାଣେ,
ଆଉ ସେ ମଂଚରେ ॥
ନମିଳୁ ପଛକେ ସଦା
ଖୋଜି ଖୋଜି ତାରେ
ଏକେଲା ମୁଁ ଚାଲିଥିବି
ଅସରା ମୋ ଜୀବନର
ଲୁହ ଭିଜା ପାହାନ୍ତି ପହରେ ॥



# ବାଘ

ନିବିଡ଼ ରାତ୍ରିର ଅନ୍ଧକାରରେ,
ନିର୍ଘଂଚ ଅରଣ୍ୟରେ ଲୁଚି,
ଖାଉଥିବା ଜଂଗ୍ଲମାଂସ ନିତି,
ଶୋଇଗଲା ନିରବ ନିସ୍ତେଜ,
ମହାବଳ ବାଘ, ଆହାର ବ୍ୟତୀତ ।
ସୁବର୍ଣ୍ଣ କଂକଣ ହାତେ ଡାକେ,
ଧର୍ମ ମୁଁ କରିବି ନିଅ, ବହୁ ମଣିଷ,
କରିଅଛି ପାପ, ଖାଇ ପୂର୍ବେ,
ହେ ପଥିକ ମାନେ।
ଅନୁନୟ, ବିନୟ ଯେତେ
ବିକଳ ବ୍ୟାଘ୍ରର କ୍ରନ୍ଦନ,
ଆଜିବା ଶୁଣୁଛି କିଏ ?
ଜଂଗଲ ସଫାତ, ସାତସ୍ୱପ୍ନ ମାଂସ,
ଅଙ୍ଗୁର ଖଟା ଯେଣୁ,
କିଂକର୍ତ୍ତବ୍ୟ ବିମୂଢ଼ ଶୃଗାଳ ।
ମାତ୍ର ବିଚରା ମହାବଳ ବାଘ,
ସେ ଜଂଗଲ, ସେ ଅତୀତ,
ସ୍ୱାଦ ସେ ମାଂସର,
କରୁଛି ପାକୁଳି ଶୋଇରହି,
ନିରବ, ନିସ୍ତେଜ, ମନ ବେଦନାରେ,
ଖୋଜୁଛି ଆଉ ଖୋଜୁଥିବ,
ଯନ୍ତ୍ରଣାରେ, ଭୋକରେ ହୋଇ
ଛଟ ପଟ, ଆଜୀବନ
ଦେହାନ୍ତ ପର୍ଯ୍ୟନ୍ତ ।।



# ପାଳଭୂତ

ନିର୍ଜନ ଏକ ଫସଲ କ୍ଷେତରେ,
ମଣିଷର ରୂପଧରି, ମିଛ ବାହାନାରେ,
ହୋଇଥାଏ ପାଳଭୂତ ଠିଆ,
ନିରବ ନିସ୍ତେଜ ଏକ ସୈନିକ ପରି,
ଅଜଣା ଆତଙ୍କରେ,ସୀମାନ୍ତ ଇଲାକାରେ,
ଅର୍ଦ୍ଧମୃତପରି. ପ୍ରତିଟି ମୁହୂର୍ତ୍ତରେ,
ମୃତ୍ୟୁର ପ୍ରତୀକ୍ଷାରେ ।
ଲୋଭରେ ଆସନ୍ତି ଚଢ଼େଇ ମାନେ,
କେଉଁ ଅଜଣା ଭୟରେ,
ଉଡ଼ିଯାନ୍ତି ଦୂର ପାହାଡ଼କୁ ।
ଖାଇଯାନ୍ତୁ ଫସଲର ଇଛା,
କିନ୍ତୁ ନିର୍ଦ୍ଦିଷ୍ଟ ଚଢ଼େଇ ଉଡ଼ିଗଲା ପରେ
ନା ସ୍ୱାଗତ କରି ପାରେ,
ନା ତଡ଼ି ଦେଇ ପାରେ ପାଳଭୂତ,
ଦେଖୁଥାଏ ଖାଲି ମିଟି ମିଟି କରି ଆଖି ।
କଣବା ଯାଏ ଆସେ, ସେଥିରେ
ଅପେକ୍ଷା କରିଥିବା ସୈନିକଟିର
ମୃତ୍ୟୁକୁ ? ଆସୁଥିବେ ଚଢ଼େଇମାନେ,
ଏମିତି ଫେରି ଯାଉଥିବେ ।
ନିରବ ନିସ୍ପନ୍ଦ ବିଚରା ସୈନିକ,

ବନ୍ଦ ହେବାଯାଏ ସେମିତି ଖାଲି

ଦେଖୁଥିବ, ହୃଦ୍‌ଯନ୍ତ୍ର କ୍ରିୟା,

ଆଉ ଦେଖୁଥିବ, ନିର୍ଜୀବ ପାଚ୍ଚଭୂତପରି,

ପାହାଡ଼ର ସୀମାନ୍ତ ଇଲାକାରେ,

ନିର୍ନିମେଷ ନୟନରେ,

ବିଦ୍ଧ ହେବାଯାଏ ଗୁଳି,

ଚଢ଼େଇ ମାନଙ୍କୁ ତା ଛାତିରେ,

ବନ୍ଧୁକର ଅନ୍ତିମ ବିଦାୟର ॥



(ନୟାଗଡ଼ ଜିଲ୍ଲା ପରିଷଦର ବାର୍ଷିକ ମୁଖପତ୍ର "ଶୂନ୍ୟଗର୍ଭା" ରେ ୨୦୦୩ରେ ପ୍ରକାଶିତ ।)

# ଜହ୍ନ ରାତ୍ରିର ଅନ୍ଧକାର

ପୂର୍ଣ୍ଣିମାର ଜହ୍ନ ରାତ୍ରିରେ
ଅମାବାସ୍ୟାର ଅନ୍ଧକାର ଭରିଦେଇ।
ନିରୁଦ୍ଦିଷ୍ଟ କରିଦେଲା,
ଜୀବନର ଆକାଂକ୍ଷିତ ଗତିପଥ ।
ତ୍ରିଶଙ୍କୁ ଭଳି ଅଧାସ୍ୱର୍ଗରେ ରହି
ନା ଏପଟର ହେଇହୁଏ ନା ସେପଟର।
ଯନ୍ତ୍ରଣା ଜର୍ଜରିତ ଅସହ୍ୟ ଦୁଃସ୍ଥିତିକୁ
ସ୍ୱର୍ଗସୁଖ ଭାବି କେତେ ଦିନ ଆଉ,
କୁହଡ଼ି ପହଁରି ହେବ ?
ବିଷପିଇ, ନୀଳକଂଠ ସାଜିବାର
ଅଭିପ୍ସାତ କେବେ ବି ନଥିଲା
ରାହୁ ଭଳି ଚକ୍ରରେ କଟି,
ଦୁଇଖଣ୍ଡ ହୋଇଥିଲେ,
ଭଲ ହୋଇଥାନ୍ତା ପଛେ,
ମୋହିନୀ କନ୍ୟାର ଅମୃତ ପରସାରୁ
ବଂଚିତ ନହୋଇ,
ଦେବଗଣ ସମ ଅମର ହେବାର
ଯେତେ ସବୁ ଆଶା, ଆକାଂକ୍ଷା
ଓ ଇପ୍ସିତ କାମନା, ବାସନା
ଓଲଟ ପାଲଟ କରିଦେଲା-
ଜୀବନାକାଶରେ
ଜହ୍ନ ରାତ୍ରିର ଅନ୍ଧକାର ॥



(" ସ୍ୱାଗତିକା" ରାଜ୍ୟସ୍ତରୀୟ କବିତା ସଂକଳନ ୨୦୦୪ ରେ ଲୋକିପୁର ଗଡ଼ମାଣିତୀର, ଖୋର୍ଦ୍ଧାରୁ ପ୍ରକାଶିତ)

# ଜୀବନ ଓ ଜ୍ୱଳନ

କହି ମୁଁ ପାରେନା କିବା
ସହି ମୁଁ ପାରେନା,
ଅଦେଖା ସ୍ଥାନର କ୍ଷତ,
ଦେଖାଇ ହୁଏନା କିମ୍ବା
ଦେଖି ବି ହୁଏନା ।
ଶରାହତ କ୍ରୌଞ୍ଚ ପକ୍ଷୀସମ,
ଛଟପଟ ହୁଏ ଖାଲି,
ମୋ ମନର ଅବ୍ୟକ୍ତ ଜ୍ୱାଳାରେ ।
ବିକଳ୍ପ ପାଏନା ଖୋଜି,
ବିବେକର ତୀବ୍ର ତାଡ଼ନାରେ ।
ଅସ୍ଥିର ମୋ ମନ ପ୍ରାଣ ସଦା,
ଜୀବନର ଅସହ୍ୟ ଜ୍ୱଳନରେ ।
ବ୍ୟଥିତ, ମଥିତ ହୃଦୟ ମୋ,
ଜଳୁଛି, ଜଳିବ ସଦା
ଜ୍ୱାଳାମୁଖୀ ସମ, ଥିବାଯାଏ
ଅନ୍ତିମ ଜୀବନର, ଶେଷ ଦୀର୍ଘଶ୍ୱାସ ॥



# ତମେ

ତମେ ଶାନ୍ତ ଶୀତଳ ଛନ୍ଦଟିଏ
ତମେ ସରସ ସରଳ ମନଟିଏ,
ତମେ ମଣି ମୁକୁତାର ଧନଟିଏ,
ତମେ ପ୍ରୀତି ଝରା କୁଞ୍ଜବନଟିଏ, ...୧

ତମେ ମନ ଉପବନେ କଳିକା
ତମେ ପ୍ରେମ-ମୟୀ ସଖୀ ଲଳିତା,
ତମେ ଜୀବନର ପ୍ରୀତି ସଳିତା
ତମେ ଲିଭିଯାଅ ଜଳି ଜଳିକା.....୨

ତମେ ଭଗିନୀ ଜାୟା ଓ ଜନନୀ
ତମେ ଦୁଃଖ ସାଗରର ତରଣୀ,
ତମେ କଷ୍ଟ ସହିଷ୍ଣୁ ଧରଣୀ,
ତମେ ସ୍ରଷ୍ଟାର ଶ୍ରେଷ୍ଠ କରଣୀ......୩

ତମେ ପ୍ରେମର ଅମୃତ ବରଷି
ତମେ ଭରିଦିଅ ହୃଦ ସରସୀ
ତମେ ପରି ରାଇଜର ରୂପସୀ
ତମେ ରମ୍ଭା ଓ ମେନକା, ଉର୍ବଶୀ......୪

ତମେ ଲକ୍ଷ୍ମୀ, ସରସ୍ୱତୀ, ପାର୍ବତୀ
ତମେ ଚେତନା, ମାୟା ଓ ପ୍ରକୃତି,
ତମେ ସୀତା, ସାବିତ୍ରୀ ଓ ଗାୟତ୍ରୀ
ତମେ ଇନ୍ଦ୍ରାଣୀ, ରୁଦ୍ରାଣୀ ଧରିତ୍ରୀ.........୫

ତମେ ସୃଷ୍ଟିର ଶ୍ରେଷ୍ଠ ଜାତିଟିଏ,
ତମେ ଘନ ଅଂଧକାରେ ବତୀଟିଏ,
ତମେ ଜୀବନ ଯୁଦ୍ଧରେ ରଥୀଟିଏ,
ତମେ ସୁଖର ଦୁଃଖର ସାଥୀଟିଏ......୬

ତମେ ଜହ୍ନ ରାଇଜର ତରାଟିଏ
ତମେ ଶୀତ ସକାଳର ଖରାଟିଏ
ତମେ କାମରେ ଲୋଟଣୀ ପାରାଟିଏ,
ତମେ ପବିତ୍ର ଜାହ୍ନବୀ ଧାରାଟିଏ,......୭

ତମେ ଶକ୍ତି ସ୍ୱରୂପିଣୀ ମହାମାୟା
ତମେ ଶାନ୍ତି ପ୍ରଦାୟିନୀ ବରାଭୟା
ତମେ କର୍ମ ଗୁଣେ ଅତି ନନ୍ଦନୀୟା
ତମେ ଯୁଗେ ଯୁଗେ ଅଟ ବନ୍ଦନୀୟା .........୮



('ତମେ' ଆକାଶ ବାଣୀ କଟକ ସୌଜନ୍ୟରୁ ଯୁବବାଣୀରେ ପ୍ରଚାରିତ ।)

# ମନପକ୍ଷୀ ଝୁରେ

ବହିଗଲା ଜୀବନରେ ସମୟର ସ୍ରୋତ,
ରହିଗଲା କାହିଁ ଦୂରେ ସୁନେଲି ଅତୀତ,
ବିତିଗଲା ଯଉବନ ହୋଇ ମସ୍‌ଗୁଲ
ଫୁଟିଲା ଜୀବନେ ଶେଷେ ନିରାଶାର ଫୁଲ ॥

ହତାଶ ବତାସ ବହିଗଲା ଅକାଳରେ,
ନିରସ ବିରସ ମନ ସଂଜ ସକାଳରେ,
ନିରତେ ନିରବେ ବସି ନିର ନୟନରେ
ବିବସ ଦିବସ ନିଶି, ଜାଗେ ଶୟନରେ ॥

ଆଖି ଲୁହ ନଈସୁଅ ସମ ସଦା ଝରେ
ସାଥୀ ବିନା ରାତି ଦିବା ଝୁରି ଝୁରି ମରେ
ଭାବି ଭାବି ଭାବିଜୀବନର ଦୁଃଖ ଯେତେ
କବିତା ଲେଖେ ସବିତା ଅସ୍ତ ପରି ଯନ୍ତେ ॥

ପାଏ ନାହିଁ ଗଲୁ କାହିଁ ଦୁନିଆଁରୁ ହଜି
ମନ ପକ୍ଷୀ ଝୁରେ ସଖୀ ତୋତେ ଖୋଜି ଖୋଜି
ଅମାନିଆଁ ମନ ବୁଝାଇଲେ ବୁଝେ ନାହିଁ
ତୋ ବିନା ଲାଗେନା ଭଲ ଦୁନିଆଁରେ କାହିଁ ॥

ଦୁଃଖ ଖାଲି ଦୁଃଖ, ନାହିଁ ସୁଖ ଆଉ ମୋର
ଯନ୍ତ୍ରଣା,ଯାତନାଖାଲି ମାନେ ଜୀବନର
ପୋଡ଼ା କର୍ମ ଲୋଡ଼ା ନାହିଁ ଏଜୀବନ ଆଉ,
କିଲୋଡ଼ା ଅଲୋଡ଼ା ପ୍ରାଣ ଶୀଘ୍ର ଚାଲିଯାଉ ।



# ଉଡ଼ା ଚଢ଼େଇ

ପକ୍ଷୀଟିଏ ମୋର ଥିଲା,
ପଞ୍ଜୁରୀରେ ,ରହୁଥିଲା,
ରାମ ନାମ ଗାଉଥିଲା,
ମନ ମୋର ମୋହୁଥିଲା,
କଥା ମୋର ମାନୁଥିଲା,
ଫୁର କିନା ଉଡ଼ିଗଲା,
ଆକାଶରେ ମିଶିଗଲା,
ପଞ୍ଜୁରୀ ମୋ ଶୂନ୍ୟ ହେଲା ।୧।
ମନେ ମନେ ଖୋଜିହୁଏ,
ଅନ୍ତର ମୋ ଦଗ୍ଧ ହୁଏ,
ନିତି ତାକୁ ଝୁରି ହୁଏ,
ଆଉ କି ମିଳିବ ସିଏ ?
ଉଡ଼ିଗଲା ଚଢ଼େଇ ର ,
ପରକି'ବା ଗଣି ହୁଏ ?।୨।

ଚଢ଼େଇ ମୋ ମିଳିବନି
ଗୀତ ଆଉ ଗାଇବନି
ମନ ଆଉ ମୋହିବନି,
ଖୋଜିଲେ ବି ପାଇବିନି
ଭାବେ ଆଉ ଝୁରିବିନି
କିନ୍ତୁ ଜମା ପାରିବିନି ।୩।
ଝୁରି ଝୁରି ଝରିଯିବି,
ତା ବିହୁନେ ମରିଯିବି,
ଦୁନିଆଁରୁ ତରିଯିବି,
ସ୍ମୃତି ତା'ର ଧରିଯିବି,
ତା ପାଶକୁ ଚ୍ଛଲିଯିବି,
ଦୁଃଖ ସବୁ ଭୁଲିଯିବି ।।୪।



# ଭଗ୍ନ ନୀଡ଼ର ପକ୍ଷୀ

ଭଗ୍ନ ନୀଡ଼ର ପକ୍ଷୀଟିଏ ମୁଁ ଯେ
କଂଠେ ମୋ ବେଦନା ଗୀତି,
କୁହ, ଭଗବାନ ଏ.କି ତୁମ ଲୀଳା
ଏ.କି ତୁମ ସୃଷ୍ଟି ରୀତି ?......(୧)

ସୁଖ ସ୍ୱପ୍ନର ସବୁଜ କ୍ଷେତ୍ର ମୋ
କାହିଁ ଗଲା ଆହା ଗ୍ୱଲି,
ଆଶାର ସଉଧ ଚୁରମାର ହେଲା
ଭରିଲା ନିରାଶା ବାଲି,.....(୨)

ବୁଝି ମୁଁ ପାରେନି ଜାଣି ମୁଁ ପାରେନି
କର୍ତ୍ତବ୍ୟ ଆଜି ମୋର
କିବା ନେଇ ମୁହିଁ ସମ୍ମୁଖୀନ ହେବି
ମିଛ ମାୟା ଦୁନିଆଁର......(୩)

କୁହ ଭଗବାନ ଦିଅହେ ଉତ୍ତର
ନିରବ ନିସ୍ତବ୍ଧ କିଆଁ
ଏ ଜୀବନ୍ନୁ ମୋର ଲଭିବକି ସତେ
ଦୁଃଖ ଯନ୍ତ୍ରଣାର ନିଆଁ ?........(୪)



# ଥୁଣ୍ଟାବର

ଥୁଣ୍ଟାବର ମୁଁ ଥୁଣ୍ଟାବର,
ସବୁଥାଇ ଆଜି କିଛି ମୋର ନାହିଁ,
ପରିତ୍ୟକ୍ତ ଆଜି ଦୁନିଆଁରେ ମୁହିଁ,
ବ୍ୟଥିତ ମନ ମୋ ହୁଏ ହାଇଁ ପାଇଁ
ଏକା ମୁଁ ବଂଚିଛି ହୋଇ ମୋର ।। ଥୁଣ୍ଟାବର ମୁଁ

ନାହିଁ ଡ଼ାଳ ପତ୍ର ନାହିଁ ମୋର ଛାୟା
ଜୀବନ ବିହୀନ ରହିଛି ମୋ କାୟା
ଚ୍ଛଳି ଗଲେ ସର୍ବେ ତୁଟାଇ ମୋ ମାୟା
ହେଉଛି ଏକା ମୁଁ ହରବର ।। ଥୁଣ୍ଟାବର ମୁଁ

ଉଡ଼ିଗଲେ ଥିଲେ ଯେତେ ପକ୍ଷୀ,
ବତାସରେ ଭଗ୍ନ ନୀଡ଼ ଦେଖି,
ରହିଛି ମୁଁ ଏକା ସ୍ମୃତି ରଖି,
ନିଜର ଯେ ସବୁ କଲେ ପର ।। ଥୁଣ୍ଟାବର ମୁଁ

ଥୁଣ୍ଟାବର ମୁଁ ପରିତ୍ୟକ୍ତ,
ନିର୍ଲିପ୍ତ ମୁଁ ଆଜି ଅନାସକ୍ତ,
ଦୁଃଖ ଯନ୍ତ୍ରଣା ମୋ ନୁହେଁ ବ୍ୟକ୍ତ
ଆଗ୍ରହ ମୋ ନାହିଁ ବଂଚିବାର ।। ଥୁଣ୍ଟାବର ମୁଁ

ଶକ୍ତି ବିହୀନ ମୁଁ ଶିବ ସମ,
ଅଲୋଡ଼ା ଅଖୋଜା ମୋର ନାମ,
ବିଧାତା ହୋଇଲା ମୋତେ ବାମ,
ଭୁଲିଲେ ସର୍ବେ ମୋ ଉପକାର ।। ଥୁଣ୍ଟାବର ମୁଁ

ମଶାଣି ପଦାରେ, ନିରିଜନେ,
ଏକାକୀ ରହିଛି ମୁଁ ମଉନେ,
ଏକା ହୋଇ ଚାଲି ଯିବି ଦିନେ,
ନଥିବେ କେହି ମୋ ସଂଗତର ॥ ଥୁଣ୍ଟାବର ମୁଁ
ଆସି ନଥିଲେ ମୋ ସଂଗେ କେହି,
କିଛି ପାରିବିନି ସାଥେ ନେଇ,
ମିଛ ମାୟା ଜାଲେ ଛନ୍ଦି ହୋଇ,
ଅଯଥାରେ ହୁଏ ମୋର ମୋର ॥ ଥୁଣ୍ଟାବର ମୁଁ



# ଶ୍ରାବଣୀ

ଶ୍ରାବଣୀ ଗୋ ତୁମେ ମେଘର କନ୍ୟା,
ଅଶାନ୍ତ ଓ ଅନୁପମ
ରିମ୍‌ଝିମ୍ ତୁମ ନୂପୁର ଛନ୍ଦେ,
ଢ଼ାଳି ଦିଅ ବାରି ମଧୁର ଗନ୍ଧେ,
ଅବିରତ ଅବିରାମ ।......।୧।
ଝଡ଼ ବରଷାର ସାନ୍ଦ୍ର ବାଦଲ
ମନ୍ଦ୍ର ମାଦଳ ତାଳେ
ଦେବ ଦୁନ୍ଦୁଭି ବାଇ ଭରି ଦିଅ,
ଅତୃପ୍ତ ଧରଣୀ କୋଳେ
ତୃପ୍ତିର ପ୍ରେମ ଧାରା
ସୃଷ୍ଟି କର ତୁମେ, ତନୁ ମନ ପ୍ରାଣେ,
ନବିନ ପୁଲ୍ଲକ ଧାରା ........।୨।
ଉପବନେ କଳି କୁସୁମ ସଜାଅ
ମୟୁର ମୟୁରୀ ନୃତେ ମଜାଅ
ପ୍ରଜାପତି ମଧୁ- ମକ୍ଷିକା, ଅଳିରେ,
ଉତଲା କରାଅ ଚୂମ୍ବନ୍ତି କଳିରେ
ଶ୍ୟାମଳ ଶଷ୍ୟ କେଦାର,
ଜନମନ ହରେ, ଶୋଭା ସୌନ୍ଦର୍ଯ୍ୟରେ
ଦୁଲ୍ଲଭ ଦାନ ତୁମର ......।୩।
ବିରହ ବ୍ୟଥାରେ ବ୍ୟଥିତ ଅନ୍ତରେ
ଘାରିହୁଏ ନବ ବଧୂ
ସାଜେ ବିରହିଣୀ ପ୍ରିୟ କଥା ଗୁଣି
ଦୂରେ ତାର ପ୍ରାଣ ବଂଧୁ

ଭୁଲିକି ଗଲ ହେ ପ୍ରିୟା,
ଲେଖେ ସେ ପତର, ହୋଇଣ କାତର
ବାରେ ଦରଶନ ଦିଅ ......।୪।
ଶ୍ରାବଣୀ ଗୋ ତୁମେ ଆସିବନି ସାଜି
ବନ୍ୟା ପ୍ରଳୟଂକରୀ,
ଧ୍ୱଂସର ତାଣ୍ଡବ କରିବନି ସୃଷ୍ଟି,
ମହାକାଳ ରୂପ ଧରି,
ଜୀବର ଜୀବନ ତୁମେ,
ମହା ପ୍ରଳୟର ରୂପ ନେଇ କେବେ
ଆସିବନି ଧରାଧାମେ ।।୫
ଶ୍ରାବଣୀ ଗୋ ତୁମେ ଆସୁଛ ଆସିବ
ବରଷକେ ଥରେ ସଦା
ଦେବକି ବାରତା ମୋ ମନର କଥା
ରହିଗଲା ଯାହା ଅଧା
ପ୍ରିୟା ମୋର ଥିବ ରହିଁ
ପାରୁନି ମୁରୁଛି ନିତି ମୁଁ ଝୁରୁଛି
ପାଶେ ତାର ଯିବା ପାଇଁ ।।୬ ।।



(୧୯୯୬ସାରଦୀୟ ବିଶେଷାଙ୍କ "ବିଭାବନା" ରେ ଢେଙ୍କାନାଳରୁ ପ୍ରକାଶିତ।)

# ଅବଶୋଷ

ଅବଶୋଷ ଖାଲି ଅବଶୋଷ
ଜୀବନଟା ସାରା ଭରା ମୋର ଖାଲି ଅବଶୋଷ ।
ଖୋଜୁଛି କେତେ ମୁଁ, ଦିଏନିତ କେହି
ଦଗ୍‌ଧ ଏ ପ୍ରାଣେ ଆଶ୍ୱାସ
ମାରେ ଖାଲି ଦୀର୍ଘ ନିଶ୍ୱାସ
ଅବଶୋଷ ଖାଲି ଅବଶୋଷ ॥୧

ନିର୍ଜନେ କେତେ ଅଂଗନେ,
ମଧୁର ସଂଗ ଲଗନେ
କରୁଛି ପ୍ରତୀକ୍ଷା ପାଏନିତ କେବେ
କାହାର କୋମଳ ପରଶ
ଲାଗେ ଖାଲି ସଦା ନିରସ
ଅବଶୋଷ ଖାଲି ଅବଶୋଷ ॥୨

ରୂପର ପସରା ମେଲାଇ
ଆଶାର ସଉଧ ତୋଳାଇ
ଆସିଛନ୍ତି ମୋର ମନ ଉପବନେ
କେ କେତେ ଛୁଟାଇ ସୁବାସ
ଦେବା ପାଇଁ ମନେ ପରାଶ
ଅବଶୋଷ ଖାଲି ଅବଶୋଷ ॥ ୩

କେତେ ମୁଁ କା ପାଇଁ ଝୁରୁଛି
ନୟନ ଲୋତକେ ପୁରୁଛି
ଭରୁନି କେମନେ ଆଶା ଆଶ୍ୱାସନା
କରୁନି କେ ପ୍ରାଣ ସରସ
ହୁଏ ଖାଲି ମନ ବିରସ
ଅବଶୋଷ ଖାଲି ଅବଶୋଷ । ।।୪।।
ଆଜି, ଅଳୀକ ଏ ମୋର ଭାବନା
ବୃଥା ହୁଏ ଖାଲି ବିମନା
ଦୁଃଖେ ବିତାଏ ଦିବସ ରଜନୀ
ନାହିଁ ମନେ ଶାନ୍ତି ସନ୍ତୋଷ
ମନେ ଜାଗେ ଖାଲି, ଅବଶୋଷ ଆଉ ଅବଶୋଷ ।।୫।।



(ଜଗତ୍ ସିଂହପୁର ଦଳେଇ ଘାଇରୁ "ଆଷାଢ଼"ରେ ପ୍ରକାଶିତ ଜୁଲାଇ ୧୯୯୬ରେ ପ୍ରକାଶିତ।)

# ଫଗୁଣ ଆସିଛି

ଫଗୁଣ ଆସିଛି, ବଉଳ ବାସୁଛି,
କୋଉଲି ଗାଉଛି କୁହୁ,
ଜହ୍ନ ହସୁଛି, ଚକୋରୀ କାନ୍ଦୁଛି,
ପ୍ରଜା ପତି, ଖୋଜେ ମହୁ । ।୧।
ନବ ପଲ୍ଲବରେ, ଶୁଶୋଭିତ ତରୁ
ପୁଷ୍ପଲତାରେ ଉଦ୍ୟାନ,
ପ୍ରେମିକ, ପ୍ରେମିକା, ମିଳନ ଆଶାରେ
ଉଲ୍ଲସିତ ତନୁମନ । ।୨।
ଅଳିର ଗୁଂଜନ, କୁମ୍ଭାଟୁଆ ସ୍ୱନ,
ଶୁଣିନବ ବିବାହିତ,
ଦମ୍‌ପତି ଯୁଗଳ, ହୁଅନ୍ତି ପାଗଳ
ପ୍ରେମରେ ହୋଇଁ ଉନ୍‌ମତ । ।୩।
ଫଗୁଣ ଆସିଛି ଫଗୁ ବରଷୁଛି
ପୁଲକିତ ଆଜି ଧରା
ପୁରେ, ପୁରେ ରତ, ଫଗୁ ଖେଳେ ସର୍ବେ
ଆନନ୍ଦରେ ଆତ୍ମହରା । ।୪।
ଫଗୁଣ ଆସିଛି, ସବୁ ଠିକ୍ ଅଛି
ନାହିଁ ଏକା ଜଣେ ପାଶେ
ଭାବୁଛି, ଭାବିବି, ସଦା ଭାବୁଥିବି
ପ୍ରତିଟି ଫଗୁଣ ମାସେ



# ମଳା ଜହ୍ନର ଛାଇ

ପାହାନ୍ତିଆ ଆକାଶର
ବୁଡ଼ିଯିବା ମଳାଜହ୍ନ,
ନାହିଁ ମୋ ଜୋଛନା-
ନାହିଁ,ସ୍ନିଗ୍ଧତା ଶୀତଳତା,
ଛାୟା ଖାଲି କାୟାର ମୁଁ,
ଅଲୋଡ଼ା ଅଖୋଜା ସତ୍ତା
କିଛିକ୍ଷଣ ପରେ ଆଉ
ରହିବନି ମୋର ପତ୍ତା ॥
ମଳାଜହ୍ନ ଅଲୋଡ଼ା ମୁଁ,
ଦୁନିଆଁରେ ଅଖୋଜା ମୁଁ,
ଏକା ଏକା ରହିଛି ମୁଁ,
ମନେ ମନେ ଖୋଜୁଛି ମୁଁ ॥
ତାରା ସବୁ ହଜିଗଲେ,
ଆକାଶରେ ଲୁଚିଗଲେ,
କଇଁ ମୁହଁ ଲୁଚେଇଲା
ମୋ ଠାରୁ ଦୂରେଇ ଗଲା ॥
ଝୁରିଚି ମୁଁ ଝୁରୁଥିବି,
ସଦା ତାକୁ ଭାବୁଥିବି,
ଯେବେ ପୁଣି ଦେଖା ହେବ,
ତେବେ ତାକୁ ପଚାରିବି ॥
କେମିତି ତୁ ଭୁଲିଗଲୁ,
କିବା ଦୋଷେ ପରକଲୁ,
ଯିଏ ଯାର ସିଏ ତାର,
ଏ କଥାକି ପାଶୋରିଲୁ ??



# ବିଦାୟ ବାର୍ତ୍ତା

ମରିବା ପୂର୍ବରୁ ଜାଣିପାରି ମୃତ୍ୟୁ କଥା
କହିଥିଲ ପାଶେ ଡ଼ାକି ତୁମ ଶେଷ ଇଚ୍ଛା ।।
ଯାଉଛି ମୁଁ ପିଲାମାନେ ଲାଗିଲେ ତୁମକୁ
ମୋ କଥା ଆଣିବ ନାହିଁ କେବେ ବି ମନକୁ ।।
"ଜନ୍ମ ହେଲେ ମୃତ୍ୟୁ ନିଶ୍ଚେ" ସତ୍ୟ ଏହିକଥା
ସ୍ୱାମୀ ଆଗେ ପତ୍ନୀଗଲେ ପାଏ ନାହିଁ ବ୍ୟଥା ।
ସ୍ୱାମୀ ଗଲେ ଆଗେ, ପତ୍ନୀ ଭୋଗେ ମହା ଦୁଃଖ
ବଂଚି ବା ଯାଏ ଜୀବନେ ପାଏନାହିଁ ସୁଖ ।।
ଦୁଃଖ କେବେ କରିବନି ମୋ ପାଇଁ ଜୀବନେ
ଭାଗ୍ୟ ମୋର ତୁମ ଆଗେ ଯିବି ମୁଁ ଶ୍ମଶାନେ ।।
ଅଳତା ସିନ୍ଦୂର ନୂଆଶାଢ଼ୀ ପିନ୍ଧାଇବ
ଅହ୍ୟ ଢେଙ୍ଗୁରା ବଜାଇ ଆଗେ ଆଗେ ଯିବ ।।
ଖଇ କଉଡ଼ି ବୁଣିବ ସଧବାରେ ମୁଁ ହିଁ
ଚ୍ଚଲିଯିବି ଏହାଠାରୁ ଭାଗ୍ୟ ମୋର ନାହିଁ ।।
ଦେବ ନାହିଁ ବ୍ୟଥା କେବେ ମଣ୍ଟୁର ଜୀବନେ
ବିଭା କରାଇବ ପୂର୍ବ ନିର୍ଦ୍ଧାରିତ ସ୍ଥାନେ ।।
ଟୁଟୁକୁ କହିଲ ଡାକି ଦୁଇ ଭାଇ ମିଳି
ଚଳିବ ଏକତ୍ର ମିଶି କରିବନି କଳି ।।
ବଡ଼ ପୁଅ ତୁହି ଘରର ସବୁ ଦାୟିତ୍ୱ
ଚଳାଇବୁ ସହି ସବୁ, ନ ହୋଇଣ ବ୍ୟସ୍ତ ।।

ମଣ୍ଟୁ ପ୍ରତି ସ୍ନେହଶ୍ରଦ୍ଧା ସଦା ରଖିଥିବୁ
ନନାଙ୍କର ସେବା ଯତ୍ନ କଥା ତୁ ବୁଝିବୁ ॥
କହିଥିବା କଥା ତୁମ ପଡ଼େ ସବୁ ମନେ
ଘାରି ହୁଏ ମନ ପ୍ରାଣ ନିତି ପ୍ରତିଦିନେ ॥
ତୁମେ ସିନା ଚାଲିଗଲ ହୋଇ ଭାଗ୍ୟବତୀ
ମୁଁ କିନ୍ତୁ ଢାଳୁଛି ଲୁହ ତୁମ ପାଇଁ ନିତି ॥
ଶେଷ ଇଚ୍ଛା ତୁମସବୁ କରିଛି ପୂରଣ
ନେଇ ଯାଅ ପାଶେ ଶୀଘ୍ର ଚାହେଁ ମୁଁ ମରଣ ॥



# ପୁଣି ସାଥୀହେବି

ପତିବ୍ରତ ପାଳି ତୁମେ ଗଲ କାହିଁ ହଜି,
ଅନୁତାପ ଅନଳରେ ଜଳୁଛି ମୁଁ ଆଜି ॥
ପୁଣ୍ୟବତୀ ଗଲ ନେଇ ଶଂଖା ଓ ସିନ୍ଦୁର
ଭୋଗୁଛି ମୁଁ ପୁର୍ବାର୍ଜିତ କର୍ମଫଳ ମୋର ॥
ଝୁରି ଝୁରି ସରୁ ନାହିଁ ଦିନରାତି ମୋର
ଅବିରତ ନୟନରୁ ଝରେ ନିରଧାର ॥
ଦିନେ ସିନା ଦୁନିଆଁରୁ ତମେ ମରିଗଲ
କିନ୍ତୁ ମୁଁ ମରୁଛି ନିତି ହୋଇ କଲବଲ ॥
ସବୁଥାଇ କିଛି ନାହିଁ ଆଜି ତୁମ ବିନେ,
ସମୁଚିତ ଶାସ୍ତି ମୁହିଁ ଭୋଗୁଛି ଜୀବନେ ॥
ନାହିଁ ଇଚ୍ଛା ତିଳେ ମୋର ଆଉ ବଂଚିବାକୁ
ଜୀବନ ମୋ ଯିବାଯାଏ ଝୁରିବି ତୁମକୁ ॥
ଦୁର୍ବ୍ୟବହାର ଯେତେ ମୁଁ ଜୀବନେ କରିଛି
ସେ ସବୁର ପ୍ରାୟଶ୍ଚିତ ଆଜି ମୁଁ କରୁଛି ॥
କେବେ ବି ଜୀବନେ ମୋତେ ଭାବି ନାହଁ ପର
ସ୍ନେହ, ପ୍ରେମ, ଭକ୍ତି ତୁମ ଥିଲା ନିରନ୍ତର ॥
ଭାବି ଭାବି ସେ ସବୁ ମୋ ହୃଦହୁଏ ହାଣି
ହେଉ ନାହିଁ ମୃତ୍ୟୁ କିଂପା ପାରୁନାହିଁ ଜାଣି ॥
ଦିବାନିଶି ଭାବେ ବସି ତୁମ ଗୁଣ ଗ୍ରାମ
ଦୁନିଆଁରେ କିଏ ଆଉ ହେବ ତୁମ ସମ ॥
ଠକି ଦେଇ ଗଲସିନା ଏଇ ଜନମରେ
ସାଥୀ ହେବି ନିଶ୍ଚେ ପୁଣି ପରଜନମରେ ॥



# ଉଦ୍‌ଭ୍ରାନ୍ତ

ଜୀବନ ମରୁରେ ବିବିକ୍ତ ପାନ୍ଥ ମୁଁ
ଏକା ଏକା ଚାଲେ ପଥ
ଭସାଇ ନେଲା ମୋ ସୁଖର ସଂସାର
ସମୟର କାଳସ୍ରୋତ
ବୟସ ମୋ ଅତିକ୍ରାନ୍ତ
ଆଶାର ସଉଧ ନିମିଷକେ ଭାଂଗି
ହୋଇଗଲା ଧୂଳିସାତ ।୧।
'ପାଞ୍ଚାକ୍ଷର ମନ୍ତ୍ର' ଜପିବିନି ବସି
କରିଛି ଜୀବନେ ବ୍ରତ
ଚାହିଁବିନି ଆଉ ଫେରି ପଛକୁ ମୁଁ
କହୁଛି ନିରାଟ ସତ
ଭୁଲିଯିବି ମୁଁ ଅତୀତ
ଝରାଇବିନି ମୁଁ ଲୁହ ଆଉ ବସି
ନୀରବରେ ଅବିରତ ।୨।
ଅବକ୍ଷୟ ମୁଖୀ ସମାଜ ପାଇଁ ମୁଁ
ଗାଳିବି ମସୀ ସତତ
କରିବି ସୃଷ୍ଟି ମୁଁ ଜନ ଜାଗରଣ
କବିତାରେ ଶତଶତ
ଆଜି, ସମାଜ ବିଶୃଙ୍ଖଳିତ,
ଅନୀତି, ଦୁର୍ନୀତି ରାକ୍ଷସ ସବୁଙ୍କୁ
କରିଅଛି କରାୟତ ।୩।

ଯୁବଶକ୍ତି ଆଜି ବିପଥରେ ଗମି
ହୋଇଛି ଉଚ୍ଛୃଙ୍ଖଳିତ
ସ୍ୱେଚ୍ଛା ଚାରିଣୀ ସାଜିଅଛି ନାରୀ
ଧର୍ମ କର୍ମରୁ ବିଚ୍ୟୁତ,
ବ୍ୟଭିଚାରେ ସର୍ବେରତ
ସତ୍ୟ, ନ୍ୟାୟ, କ୍ଷମା, ନିଃସ୍ୱାର୍ଥପରତା
ଗୁଣ ସର୍ବେ ବିବର୍ଜିତ ।୪।
ମାନବ ସାଜିଛି ଦାନବ ଆଜିରେ
ସୁରା ଓ ସାକିରେ ମତ
ରକ୍ଷକ ସାଜିଛି ଭକ୍ଷକ ଆଜିରେ
ଠୁଳକରେ କଳାବିତ
ଅଥୟ ସବୁରି ଚିତ୍ତ
ଆଦରି ନେଇଛି ଗର୍ବ, ଅହଂକାର
ସ୍ୱାର୍ଥ-ପରତାର ପଥ ।୫।
ପାଶ୍ଚାତ୍ୟ ସଭ୍ୟତା ସଂସ୍କୃତି ଆଜି
ପ୍ରାଚ୍ୟରେ ଅନୁସୃତ
ବେଦ ବର୍ଣ୍ଣିତ ଆଦର୍ଶବାଦକୁ
ଭୁଲି ଅଛି ଆର୍ଯ୍ୟାବର୍ତ୍ତ
ଏକ ପତ୍ନୀର ବ୍ରତ
ସମଗ୍ର ବିଶ୍ୱର ନାରୀ ଜାତି ଅଟେ।
ପୁରୁଷର ମାତୃବତ ।୬।

ପତ୍ନୀ ଗ୍ରହଣ 'ସଂଭୋଗ' ପାଇଁକି
ନୁହେଁ ଆର୍ଯ୍ୟ ଋଷି ମତ
ବଂଶରକ୍ଷା ଅର୍ଥେ ପତି ଓ ପତ୍ନୀର
ଲୋଡ଼ା ଏକମାତ୍ର ସୁତ
ଏ ମହା ଆଦର୍ଶ ମନ୍ତ୍ର
ସାରା ଦୁନିଆଁକୁ ଏ ଦିଗ୍‌ଦର୍ଶନ
ଦେଇ ଆସିଛି ଭାରତ ।୭।

ବିଶ୍ୱ ମାନବ ନିଃସ୍ୱ ନୁହେଁ ଆଜି
ଜ୍ଞାନ ବିଜ୍ଞାନେ ଉନ୍ନତ
ଅତିରୁ ଇତି ସେ ହେବା ପାଇଁ କରେ
ବିଜ୍ଞାନକୁ ତ୍ୱରାନ୍ୱିତ
ଗଢ଼ି ଆଣବିକ ଅସ୍ତ୍ର
ନିଜର ବିନାଶ ପାଇଁ ନିଜ ହାତେ
ସୃଷ୍ଟି କରୁଅଛି ଗର୍ତ୍ତ ।୮।

"ସର୍ବେ ଭବନ୍ତୁ ସୁଖିନଃ" ବାଣୀ
(ଆଜି) ସୁଦୂର ପରାହତ
ନିଜ ସ୍ୱାର୍ଥଲାଗି ତତ୍‌ପର ମଣିଷ
ପରପୀଡ଼ନରେ ରତ
ନିରୀହରେ କରେ ହତ
ସଚେତନ ହୁଅ ସର୍ବ ଦେଶବାସୀ
ଆଜି, ଦୁଃସମୟ ଉପଗତ ।୯।

ଏକ ପରିବର୍ତ୍ତେ ଅନେକ' ରାବଣ
ଆଜି, ବିଶ୍ୱରେ ଆତଯାତ
ଈଶ୍ୱରଙ୍କର ଏ ସୁନ୍ଦର ସୃଷ୍ଟିର
ଧ୍ୱଂସ ପାଇଁକି ଉଦ୍ୟତ,
ଆଜି, ବିଶ୍ୱବାସୀ ଆତଙ୍କିତ
ତୁମର ଏ ସୃଷ୍ଟି ରକ୍ଷାକର ତୁମେ
ଆହେ ପ୍ରଭୁ ଜଗନ୍ନାଥ ।୧୦।



ରାଜ୍ୟସ୍ତରୀୟ କବିତା ସଂକଳନ 'ସ୍ୱାଗତିକା' ୨୦୦୫ରେ
ଲୋକିପୁର, ଗଡ଼ମାଣତୀର, ଖୋର୍ଦ୍ଧାରୁ ପ୍ରକାଶିତ ।



## ଲେଖକଙ୍କର ସଂକ୍ଷିପ୍ତ ପରିଚୟ

ଶ୍ରୀ ଲୋକନାଥ ମିଶ୍ର (ଭରଦ୍ୱାଜ)
ପିତା ୰ ଗୋପିନାଥ ମିଶ୍ର
ମାତା ୰ ସେବତୀ ଦେବୀ
ଜନ୍ମ : ତା. ୧୫ ମାର୍ଚ୍ଚ ୧୯୩୭ ମସିହା
ଜନ୍ମସ୍ଥାନ : ସା/ପୋ - କୋରପିଠା, ଜି - ନୟାଗଡ଼
ବର୍ତ୍ତମାନର ବାସସ୍ଥାନ : ସା/ପୋ - ଓଡ଼ଗାଁ (ନିତ୍ୟାନନ୍ଦ ସାହି)
(ବାଣୀନିକେତନ)
ଜି - ନୟାଗଡ଼, ପିନ୍ - ୭୫୨୦୮୧
ଫୋନ୍ - ୨୬୦୧୪୮ / ୦୬୭୫୩
କବିତା ରଚନା ଆରମ୍ଭ : ୧୯୬୪ ମସିହା
ପ୍ରକାଶିତ ପୁସ୍ତକ :
୧ - ପ୍ରଭୁ ରଘୁନାଥ ଭଜନମାଳା
୨ - ମନମରାଳଝୁରେ (କାବ୍ୟ)
୩ - ଉର୍ବଶୀ (କାବ୍ୟ)
୪ - ଜୟଶ୍ରୀ ରଘୁନାଥ (ଶ୍ରୀରାମ ଭଜନ)
୫ - ଏଠି ସବୁ ଚଳିବ (ବ୍ୟଙ୍ଗ କବିତା)
୬ - ଆ' ଜହ୍ନ ମାମୁଁ, ଶିଶୁ କିଶୋର କବିତା
୭ - ଜୀବନ ଓ ଜ୍ୱଳନ (କାବ୍ୟ)